# ଅତୀତରେ ଓଡ଼ିଶା

□ ଶିବପ୍ରସାଦ ଦାଶ

ପ୍ରଥମ ମୁଦ୍ରଣ - ୧୯'୫୯ ଅକ୍ଟୋବର

শ্রী শিবপ্রসাদ দাশ
প্রথমসংস্করণ - ১৯৫২
অক্টোবর

# ସୂଚୀ ପତ୍ର


| ବିଷୟ | | ପୃଷ୍ଠାଙ୍କ |
|---|---|---|
| ୧ । ଉପୋଦ୍‌ଘାତ | ... | ୧ |
| ୨ । ବିସ୍ମୃତ ପଥେ ଓଡ଼ିଶା | ... | ୪ |
| ୩ । ବୋଇତ ଯାତ୍ରା | ... | ୧୨ |
| ୪ । କଳିଙ୍ଗ ଯୁଦ୍ଧ | ... | ୨୦ |
| ୫ । ଶ୍ରୀ ଖାରବେଳ ଚେତ | ... | ୯୦ |
| ୬ । ଦୁର୍ଦ୍ଦିନେ ଓଡ଼ିଶା | | ୧୧୨ |
| ୭ । ଓଡ଼ିଶାରେ ସୋମଗୁପ୍ତ ବଂଶ | | ୧୩୮ |


ବିଶେଷ ଦ୍ରଷ୍ଟବ୍ୟ :-

୧ । ୧୯ ପୃଷ୍ଠାରେ ଥିବା ସଂସ୍କୃତ ଶ୍ଳୋକର ଦ୍ୱିତୀୟ ପାଦକୁ ଏହି ପ୍ରକାରେ ପଢ଼ନ୍ତୁ —

ଜଗନ୍ତୁସ୍ୱନ୍ୟାଚ୍ୟବନୋ ମହର୍ଷିଃ ।

୨ । ୧୯୧ ପୃଷ୍ଠା ଚତୁର୍ଥ ଧାଡ଼ିର 'ପ୍ରାଦେଶିକ' ପଦ ପରେ ପୂର୍ଣ୍ଣଚ୍ଛେଦ ରହିବ ।

# ଚିତ୍ର, ମାନଚିତ୍ର ଓ ନିବନ୍ଧ ସୂଚୀ


| ଚିତ୍ର | ପୃଷ୍ଠାଙ୍କ |
|---|---|
| ୧ । ଭାରତବର୍ଷ (ମହାଭାରତ) | ୯ |
| ୨ । ତ୍ରିକଳିଙ୍ଗ ଓ କଳିଙ୍ଗ ସାମ୍ରାଜ୍ୟ | ୩୩ |
| ୩ । ବରବୁଦୁର | ୪୯ |
| ୪ । କଳିଙ୍ଗର ବାଣିଜ୍ୟ ଅବସାୟ | ୭୧ |
| ୫ । ଖାରବେଳଙ୍କ ସାମ୍ରାଜ୍ୟ | ୧୦୧ |
| ୬ । ଆନ୍ଧ୍ର, ରାଜତ୍ୱ ପରେ ଓଡ଼ିଶା | ୧୧୫ |
| ୭ । ନବଖଣ୍ଡ ମେଦିନୀ<br>୮ । ଭାରତବର୍ଷ (ମହାଭାରତ) | ୧୩୫ |
| ୯ । ଦକ୍ଷିଣ କୋଶଳ | ୧୪୧ |
| ୧୦ । ଭାରତବର୍ଷ ( ହ୍ୱାଂ ଚ୍ୱାଂ ) | ୧୪୭ |
| ୧୧ । ଲୁଣ୍ଡ୍ରୁମା ତାମ୍ରଶାସନ | ୧୬୫-୬ |
| ୧୨ । ସୋନପୁର ତାମ୍ରଶାସନ | ୧୬୯ |
| ୧୩ । ଭୁବନେଶ୍ୱର ଦେଉଳ | ୧୮୬ |

# ଅତୀତରେ ଓଡ଼ିଶା

## (୧)

## ଉପୋଦ୍‌ଘାତ

ପୁରାଣପ୍ରଖ୍ୟାତ କ୍ଷତ୍ରିୟ ଜାତିର ଭୀଷଣ ଅଂଧାରାତର ଉପକ୍ରମ ହେଲା ଗ୍ରୀକ୍, ଶକ, କୁଶାଣ ଓ ହୁଣମାନଙ୍କର ଭାରତ ଆକ୍ରମଣ ସଙ୍ଗେ । ନବାଗନ୍ତୁକ ଯେଉଁ ଯୁଯୁତ୍ସୁ ଜାତିମାନଙ୍କ ସହ ସାମାଜିକ ଓ ବୈବାହିକ ସଂପର୍କ ସ୍ଥାପନ କରି ଭାରତୀୟ କ୍ଷତ୍ରିୟ-ମାନେ କୌଣସି ମତେ ନିଜ ସଂସ୍ଥାନ ରକ୍ଷା କଲେ । ଭାରତର ରାଜନୈତିକ ଐକ୍ୟର ରକ୍ଷା ସକାଶେ ଏବଂ ବହୁଭଙ୍ଗାଭଗ୍ନର ନବୀକରଣ ନିମନ୍ତେ—ବ୍ରାହ୍ମଣମାନେ ଆବୁ ପର୍ବତ ଶିଖରରେ ଏକ ସଂସ୍କାର ଯଜ୍ଞ ଅନୁଷ୍ଠାନ କରି ଏହି ମିଶ୍ର କ୍ଷତ୍ରିୟ ଜାତିକୁ ଏକ ନବ ଗୌରବ ଦାନ କଲେ । ଏହି ମିଶ୍ର କ୍ଷତ୍ରିୟ ଜାତି ଏହିପରି ଅଗ୍ନିକୁଳ ରାଜପୁତ ନାମରେ ବିଦିତ ହେଲେ । ଭାରତର ସୂର୍ଯ୍ୟକୁଳ ଓ ଚନ୍ଦ୍ରକୁଳ କ୍ଷତ୍ରିୟମାନଙ୍କ ବାହାରେ ଏକ ନୂତନ କ୍ଷତ୍ରିୟକୁଳ ବା ଅଗ୍ନିକୁଳ ରାଜପୁତ ଜାତିର ଭାରତରେ ସୃଷ୍ଟି ହେଲା ।

କିନ୍ତୁ ଅଳ୍ପ କେତେକ ଶହ ବର୍ଷ ପରେ ଭାରତରେ ମୁସଲ-
ମାନ ଶକ୍ତିର ଆବର୍ତ୍ତ ସଙ୍ଗେ ବ୍ରାହ୍ମଣମାନଙ୍କର ସେହି ବସ୍ତୁରକ୍ଷା
ଉଦ୍ୟମ ବିଫଳୀକୃତ ହେଲା । କ୍ଷତ୍ରିୟହସ୍ତରୁ ମୁସଲମାନହସ୍ତକୁ
ଶାସନଦଣ୍ଡ ହସ୍ତାନ୍ତରିତ ହେଲା । ଭାରତୀୟ କ୍ଷାତ୍ର ରାଜନ୍ୟଗଣ
ସାଧାରଣ ନାଗରିକରେ ପରିଣତ ହେଲେ । ସେମାନଙ୍କର
କ୍ଷାତ୍ରୋଚିତ ଶୌର୍ଯ୍ୟ, ବୀର୍ଯ୍ୟ, ଗରିମା, ଶୁଚି ଓ ଚରିତ୍ରନିଷ୍ଠା କ୍ରମଶଃ
ନିର୍ବାଣ ଲାଭ କଲା । କ୍ଷତ୍ରିୟଜାତିର ସେସମସ୍ତ ବିଭବ ରାଜପୁତ
ଜାତିଠାରେ ସମ୍ରାଟ୍ ଆକବର ଓ ଆଓରଙ୍ଗଜେବଙ୍କ ରାଜତ୍ୱକାଳ
ପର୍ଯ୍ୟନ୍ତ କିଛିକାଳ ସଙ୍କୁଚିତ ଆକାରରେ ଆତ୍ମପ୍ରକାଶ କରିଥିଲା ।

ଶୌର୍ଯ୍ୟବୀର୍ଯ୍ୟ, ଔଦାର୍ଯ୍ୟଗରିମା, ଚରିତ୍ରନିଷ୍ଠା ଓ ଶୁଚି, ତ୍ୟାଗ-
ଅହିଂସା, ନ୍ୟାୟଧର୍ମ, ଭାରତୀୟ ଜାତିର ପ୍ରାଣ । ସେହି ଗୁଣମାନ
ବୈଦିକ ଯୁଗରୁ ଏହି ଜାତିକୁ ଟେକିଧରିଛି । ଭାରତୀୟ ପ୍ରାଣ-
ବିନିମୟରେ ଦେଶ, ଜାତି ଓ ଅପରର ସ୍ୱାର୍ଥ ରକ୍ଷା କରେ ।
ଭାରତୀୟ ଧର୍ମ ଧାରଣ କରେ, ନାହିଁ ବ୍ୟକ୍ତିର ସ୍ୱାର୍ଥ, ରକ୍ଷା କରେ
ଜଗତ୍ । ବାଞ୍ଛା କରେ ନାହିଁ ଆତ୍ମଭୂତି, ସେ ଭିକ୍ଷା କରେ ରାଷ୍ଟ୍ର
ପ୍ରଜାଙ୍କର ଶାନ୍ତି ।

ଇଂରାଜଜାତିର ଭାରତବିଜୟ ପର୍ଯ୍ୟନ୍ତ ଓଡ଼ିଆ ଜାତି ଉପର
କଥିତ ସେହି ଭାରତୀୟ ଗରିମା ଓ ଚରିତ୍ରାଧାର, ତଥା ଜାତୀୟ ଜୀବନ
ଓ ପ୍ରାଣ ଉଣା ଅଧିକରେ ରକ୍ଷା କରି ଆସିଥିଲା । ଦୁର୍ଦ୍ଧର୍ଷ
ବୈଦେଶିକ ଶକ୍ତିର ପରାଧୀନତା ନିଗଡ଼ରେ ଓଡ଼ିଶା ଛନ୍ଦା ହୋଇ
ନ ଥିଲା । ତେଣୁ ଜାତୀୟ ଶୈଳୀ ବିଘୋର ହେବାକୁ ଓଡ଼ିଶାର
ଦୁର୍ଯୋଗ ଘଟି ନ ଥିଲା ।

ରାଜପୁତ ଜାତିର ବୀରୋଚିତ ଚରିତ୍ରନିଷ୍ଠା, ସାହସିକତା ଓ ଦେଶ ପାଇଁ ଆତ୍ମୋତ୍ସର୍ଗ କେବଳ ଭାରତରେ ନୁହେଁ, ଜଗତରେ ଦୁର୍ଲ୍ଲଭ । ହେଲେହେଁ ସେହି ଗୌରବ ରାଜପୁତ କାହାଣୀର ନୁହେଁ, କିମ୍ବା ବହିର୍ମୁଖୀ ବା ବହିଃକୋଟିସମ୍ପନ୍ନ ନୁହେଁ । ଅପରନ୍ତୁ, ଓଡ଼ିଆ କେଉଁ କାଳରୁ ସେ ପ୍ରକାର ଗୌରବର ଅଧିକାରୀ, ଏବଂ କି ପ୍ରକାର ବହିର୍ମୁଖୀ ଓ ବହିଃକୋଟି ଓଡ଼ିଆର ଦେଶବଧ ଗୌରବ, ତାହା ଖୋଜି ବାହାର କରିବାକୁ ହେବ ଇତିହାସର ପୃଷ୍ଠା-ମାନଙ୍କରୁ । ଅଶୋକଙ୍କ ବହୁପୂର୍ବେ ଓଡ଼ିଆ ସ୍ଥାପନ କରିଥିଲା ପାରେସମୁଦ୍ର ବାଣିଜ୍ୟ, ସାମ୍ରାଜ୍ୟ ଓ ଧର୍ମରାଜ୍ୟ । ପଥର ଓ ତାଳପତ୍ରରେ ଲେଖିଯାଇଛି ଓଡ଼ିଆ ଅତୀତର ଶିଳ୍ପ ବିଭବ ଓ ଜାତିର ଇତିହାସ । ବଦ୍ରିନାଥ, ରାମନାଥ, ଦ୍ୱାରକାନାଥଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱୀ ରୂପେ ଛିଡ଼ା ଓଡ଼ିଆର ଜଗନ୍ନାଥ । ଭାରତର ଭାସ୍କରଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱୀ ଓଡ଼ିଆର ଚନ୍ଦ୍ରଶେଖର ।

ଆଜି ଓଡ଼ିଆର ଦଶା ଦେଖିଲେ ବିଶ୍ୱାସ ହୁଏ ନା, ଯେଉଁ ଓଡ଼ିଆର ବଂଶଧର ଏହି ଓଡ଼ିଆ, ଅଥବା ଏହି ଓଡ଼ିଆର ପୂର୍ବପୁରୁଷ ସେହି ଓଡ଼ିଆ । ପରବର୍ତ୍ତୀ ପୃଷ୍ଠାମାନଙ୍କରେ ଲେଖକ ସୂଚନା ମାତ୍ର ଦେବ ସେହି ପ୍ରାଚୀନ ଗୌରବର, ପ୍ରାଚୀନ ଶକ୍ତିଶାଳୀ ଓଡ଼ିଆ ଜାତିର ପ୍ରାଚୀନ ଜୀବନରେ କେତେକ ରଶ୍ମିରେଖା, ଯାହାକୁ ଆଲୋକସ୍ତମ୍ଭ ରୂପେ ଲକ୍ଷ୍ୟ କରି ଅଗ୍ରସର ହୋଇ ପାରିବ ଓଡ଼ିଆ ପୁଅ ।

ଭାରତକୁ ଆସି ଇଂରାଜ ଜାତି ରାଜପୁତ ଜାତିକୁ ପଙ୍ଗୁ ଅବସ୍ଥାରେ ଦେଖିଲେ, କିନ୍ତୁ ସେତେବେଳେ ସୁଦ୍ଧା ଓଡ଼ିଆ ବୀର

ରହିଥିଲ ଅଚଳଳ ଅବସ୍ଥାରେ । ସିପାହୀ ଯୁଦ୍ଧ ବେଳେ ଝାନ୍ସୀ ଲକ୍ଷ୍ମୀବାଈ ଲୋଡ଼ୁଥିଲେ ଓଡ଼ିଆର ଧର୍ମ ଉପରୁ ଗୃହିଁଖୁଣ୍ଟିଆର ମୃତସଞ୍ଜୀବନୀ ନଥେଲ । ବ୍ରିଟିଶମାନେ ଓଡ଼ିଆକୁ ପଙ୍ଗୁ, ଚୂର୍ଣ୍ଣ, ପିଷ୍ଟ କରଦେଲେ; ଓଡ଼ିଶାରୁ ଖଣ୍ଡିଏ ଖଣ୍ଡିଏ ଟୁକୁଡ଼ା ନେଇ ଗଢ଼ଲେ ମାନ୍ଦ୍ରାଜ, ମଧ୍ୟପ୍ରାନ୍ତ, ବଙ୍ଗବହାର; ଓଡ଼ିଆ ପାଇକଙ୍କୁ ପାହିରେ ମିଶାଇଦେଲେ । ବ୍ରିଟିଶ ସେନାରେ ରହିଲେ ଗୁର୍ଖା, ଶିଖ, ରାଜପୁତ୍; ରହିଲେ ନାହିଁ ଜଣେ ହେଲେ ଓଡ଼ିଆ । ବ୍ରିଟିଶ ଓଡ଼ିଆର ମେରୁଦଣ୍ଡ, ଆର୍ଥିକ, ସାମରିକ ଓ ସର୍ବୋପରି ନୈତିକ ତେଜ ଭାଙ୍ଗିଦେଲ । ଆଜି ଭାରତ ଦ୍ୱାରରେ ଓଡ଼ିଆ ସବା ପଛରେ ! ଆଜି ଓଡ଼ିଆ ମ୍ରିୟମାଣ ଓ କାଙ୍ଗାଳ ! କିନ୍ତୁ, ସୁପ୍ତ ସିଂହ ରହେନା ଚିରଦିନ ସୁଷୁପ୍ତିରେ; ଉଠିବ, ଦିନେ ଉଠିବ, ନିଜ ବଳ, ନିଜ ଶକ୍ତି, ନିଜ ତେଜ ହେଜିବ, ଚେତିବ ।



(୨)

# ବିସ୍ମୃତପଥେ ଓଡ଼ିଶା

ପ୍ରାଚୀନ ଗୌରବନ୍ତ ଭାରତୀୟ ସଭ୍ୟତାକୁ ପାଶ୍ଚାତ୍ୟ ଐତିହାସିକମାନେ କହୁଥିଲେ ଅର୍ବାଚୀନ ବା ଖ୍ରୀଷ୍ଟପୂର୍ବ ଦୁଇ ତିନି-ହଜାର ମାତ୍ର ବର୍ଷର ବୋଲି । ସେମାନଙ୍କର ଏହି ଭ୍ରମକୁ ଭାଙ୍ଗିଦେଇଛି ସୈନ୍ଧବଅବବାହିକାର ଆନ୍ତର୍ଭୌମ ନିଷ୍କାସନ । ସେହି ବଳରେ ପ୍ରମାଣିତ ହୋଇଛି ଯେ ଖ୍ରୀଷ୍ଟ ଜନ୍ମର ପାଞ୍ଚ ସାତ ହଜାର ବର୍ଷ ପୂର୍ବେ ଭାରତରେ ଏକ ସଭ୍ୟ ଉନ୍ନତ ସଂସ୍କୃତିସମ୍ପନ୍ନ ଜାତି ବାସ କରୁଥିଲେ । ସେମାନଙ୍କର ନାଗରିକ ଶାସନ ସଂସ୍ଥା ବା ମ୍ୟୁନିସିପାଲିଟି ଥିଲା । ସେହି ସଭ୍ୟତାର ସଙ୍କେତ ବା ପ୍ରମାଣବସ୍ତୁ ମହେଞ୍ଜୋଦାଡ଼ୋ ଓ ହରପ୍ପାର ମାଟିତଳୁ ଖୋଳା ହୋଇଛି ।

ହରପ୍ପା ଓ ମହେଞ୍ଜୋଦାଡ଼ୋରେ ମିଳିଛି ଏକ ପ୍ରକାର ଚିତ୍ରଲିପି । ଏହି ଚିତ୍ରଲିପିର ବହୁ କ୍ରମବିକାଶ ଓ ପରିବର୍ତ୍ତନ ପରେ ଭାରତୀୟ ଲିପି ବା ବ୍ରାହ୍ମୀଲିପିର ଉଦ୍ଭବ ହୋଇଛି । ମିଶର, ମେସୋପଟେମିଆ ଓ ମଧ୍ୟ ଆସିଆ ଅଞ୍ଚଳରେ ମଧ୍ୟ ହରପ୍ପା ମହେଞ୍ଜୋଦାଡ଼ୋର ସମପ୍ରକାର ଚିତ୍ରଲିପିର ବ୍ୟବହାର ଥିଲା । ଓଡ଼ିଶାର ମହାନଦୀ-କାଠଯୋଡ଼ିର ତ୍ରିକୋଣଭୂମି ଶୃଙ୍ଗରେ ନରାଜଠାରେ ମଧ୍ୟ ଏପ୍ରକାର ଏକ ଚିତ୍ରଲିପି ଆବିଷ୍କୃତ ହୋଇଛି । ସେଥିରୁ ବୁଝାପଡ଼େ, ହରପ୍ପା ମହେଞ୍ଜୋଦାଡ଼ୋ ସଭ୍ୟତା ଓଡ଼ିଶା ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ଅର୍ଥାତ୍ ଭାରତର ସର୍ବାଞ୍ଚଳରେ

ସୈନ୍ଧବ ସଭ୍ୟତା ପ୍ରସାର ଲାଭ କରିଥିଲା ଏବଂ ଭାରତର ସର୍ବତ୍ର ସଭ୍ୟ ଶିକ୍ଷିତ ମାନବ ବାସ କରୁଥିଲେ ।

ହରପ୍ପା ମହେଞ୍ଜୋଦାଡ଼ୋର ସଭ୍ୟ ଜାତିର କ୍ଷିପ୍ର ଆନ୍ତର୍ଜାତୀୟ ଓ ପାରେସମୁଦ୍ର ବାଣିଜ୍ୟ ଥିଲା । ସେମାନଙ୍କର ଲିପି, ଭାଷା ଓ ପ୍ରସ୍ତରରେ ଖୋଦନ କରିବାର କୌଶଳ ଥିଲା । ତତ୍କାଳୀନ ସୈନ୍ଧବ ଓ ଭାରତୀୟ ସଭ୍ୟତାର ପ୍ରକୃତ ରୂପ ପ୍ରତିଭାତ ହେବ ଯେତେବେଳେ ବିଦ୍ୱାନମାନେ ସମର୍ଥ ହେବେ ସୈନ୍ଧବ ଚିତ୍ରଲିପି ପାଠ କରିବାରେ । ସେଥି ନିମନ୍ତେ ଆହୁରି ଅଧିକ ଚିତ୍ର-ଲିପିର ଆବିଷ୍କାର ଓ ତାହାର ସାର୍ଥ ପାଠ ଆବଶ୍ୟକ ।

ପାଶ୍ଚାତ୍ୟମାନେ ମନେ କରିଥିଲେ ଯେ ଭାରତୀୟ ବ୍ରାହ୍ମୀ ଲିପି ଉଦ୍ଭୂତ ହୋଇଅଛି ମଧ୍ୟ ଆସିଆର ଚିତ୍ରଲିପିରୁ; କିନ୍ତୁ ମହେଞ୍ଜୋ-ଦାଡ଼ୋ ହରପ୍ପାର ଲିପିର ଆବିଷ୍କାର ସେହି ପାଶ୍ଚାତ୍ୟମତକୁ ଖଣ୍ଡନ କରିଅଛି । ତେବେ ସୈନ୍ଧବ ଲିପି ସଙ୍ଗେ ବ୍ରାହ୍ମୀଲିପିର ସମନ୍ୱୟ ସ୍ଥାପନ ନିମନ୍ତେ ଏ ପର୍ଯ୍ୟନ୍ତ ଭାରତରେ କୌଣସି ପ୍ରକାର ଯୋଗବାହ ବା ଅନ୍ତର୍ବର୍ତ୍ତୀ ଲିପି ଆବିଷ୍କୃତ ହୋଇନାହିଁ । ସୈନ୍ଧବ ଲିପିର ପରବର୍ତ୍ତୀ ଲିପି ମୌର୍ଯ୍ୟ ଅଶୋକଙ୍କ ଶିଳାଲେଖ । ଅର୍ଥାତ୍ ପାଞ୍ଚ ହଜାର ବର୍ଷ କାଳ ଇତିହାସ ଏ ବିଷୟରେ ମୌନ ରହିଛି ।

ପାଞ୍ଚ ହଜାର ବର୍ଷର ଏହି ଦୀର୍ଘ ମୌନତା ଭଗ୍ନ କରେ ଓଡ଼ିଶା ଅନ୍ତଃପାତୀ ସମ୍ବଲପୁର ଜିଲ୍ଲାର ବିକ୍ରମଖୋଲର ଶିଳାଲେଖ । ପର୍ବତ ଖୋଲର ଏକ ପ୍ରାଚୀର ଗାତ୍ରରେ ଖୋଦିତ ଏହି ଶିଳାଲିପିର ଦୈର୍ଘ୍ୟ ୩୨ ଫୁଟ ଓ ପ୍ରସ୍ଥ ୭ ଫୁଟ । ବିକ୍ରମଖୋଲର ଲେଖ ବା ଲିପି

ସୈନ୍ଧବ ଲିପି ଓ ବ୍ରାହ୍ମୀଲିପିର ଅନ୍ତର୍ବର୍ତ୍ତୀ*। ଏହି ଲିପି ବ୍ୟବହୃତ ହେଉଥିଲା ସୈନ୍ଧବ ସଭ୍ୟତା ଓ ମୌର୍ଯ୍ୟ ସଭ୍ୟତାର ମଧ୍ୟଯୁଗରେ ।

ବିକ୍ରମଖୋଲ୍ ସମ୍ବଲପୁର ଜିଲ୍ଲାର ଉତ୍ତର ସୀମାନ୍ତ ଅଞ୍ଚଳରେ, ସୁନ୍ଦରଗଡ଼ ଜିଲ୍ଲାର ସମୀପରେ ଅଛି । ବିକ୍ରମଖୋଲ୍‌ରୁ ଦଶ ମାଇଲ ଦୂରରେ ଅବସ୍ଥିତ ଉଲାପଗଡ଼ ପାହାଡ଼ । ସେଠାରେ ଏକ ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ତଥା ଅନ୍ୟ ଏକ ପ୍ରସ୍ତରଲିପି ଦେଖାଯାଏ । ଏହା ବ୍ରାହ୍ମୀ ପୂର୍ବବର୍ତ୍ତୀ ଲିପି ଏପର୍ଯ୍ୟନ୍ତ ଦୁର୍ବୋଧ୍ୟ ରହିଥିବାରୁ ବିକ୍ରମଖୋଲର ତଥ୍ୟ ପ୍ରକାଶିତ ହୋଇ ପାରୁ ନାହିଁ । ବିକ୍ରମଖୋଲ ଓ ଉଲାପଗଡ଼ରୁ ଯେଉଁ ତଥ୍ୟ ବା କାହାଣୀ ବାହାରୁ, ଏଥିରେ ସନ୍ଦେହ ନାହିଁ ଯେ ଆଜକୁ ଗୃଣ ପାଞ୍ଚ ହଜାର ବର୍ଷ ପୂର୍ବେ

*"The characters in Vikramkhol inscription belong to a period intermediary between the scripts of Mohenzadaro and Brahmi. Some letters still retain their original or secondary Mohenzodaro forms and some have assumed the Brahmi or proto-Brahmi forms. This proves the origin of Brahmi to be Indian and throws a flood of light on the history of writing, as from Brahmi the Phoenician and European scripts are derived."

—*K. P. Jayaswal.*

ସମ୍ବଲପୁର ଜିଲ୍ଲାରେ ଏକ ସଭ୍ୟ ଓ ଉଚ୍ଚକୋଟି ସଂସ୍କୃତସମ୍ପନ୍ନ ମାନବଜାତି ବାସ କରୁଥିଲେ । ସେମାନଙ୍କର ଭାଷା ଓ ଲିପି ଥିଲା । ସେମାନଙ୍କୁ ପ୍ରସ୍ତର ଖୋଦନ ପ୍ରଣାଳୀ ତଥା ଦୁର୍ଗ ନିର୍ମାଣ ଜଣାଥିଲା ।

ରାମାୟଣରୁ ଜଣାଯାଏ ଯେ ଦାକ୍ଷିଣାତ୍ୟ ଅରଣ୍ୟସଙ୍କୁଳ ଥିଲା । ଜନସ୍ଥାନ, ଦଣ୍ଡକା ଓ କିଷ୍କିନ୍ଧା ତହିଁର ପ୍ରଧାନ ବନ ପ୍ରଦେଶ ଥିଲା । ଦକ୍ଷିଣ ଅନ୍ତଃପାତୀ ମେକଳ, ଦଶାର୍ଣ୍ଣ, ଅବନ୍ତୀ, ମାହିଷକ, ବିଦର୍ଭ, ଆନ୍ଧ୍ର, କଳିଙ୍ଗ, ଉତ୍କଳ, ଚୋଳ, ପାଣ୍ଡ୍ୟ ଓ କେରଳ ଦେଶମାନଙ୍କର କିଷ୍କିନ୍ଧାକାଣ୍ଡରୁ ଉଲ୍ଲେଖ ମିଳେ । ଉତ୍ତରପନ୍ଥୁ ଚିତ୍ରକୂଟ ପାର ହେଲେ, ଦକ୍ଷିଣ ହସ୍ତ ପଟରେ ରହେ ଜନସ୍ଥାନ ଏବଂ ବାମ ହସ୍ତ ପଟରେ ଦଣ୍ଡକା ରହେ । ଦଣ୍ଡକାର ନାମାନ୍ତର ଝାଡ଼ଖଣ୍ଡ । ସାନ୍ତାଳ ପ୍ରଗଣାର ବୈଦ୍ୟନାଥ ମନ୍ଦିରଠାରୁ ଗଞ୍ଜାମର ମାଳଅଞ୍ଚଳ ପର୍ଯ୍ୟନ୍ତ ଝାଡ଼ଖଣ୍ଡ ବ୍ୟାପି ରହିଥିଲା । ଓଡ଼ିଶାର ଉପକୂଳ ଅଞ୍ଚଳ ଛାଡ଼ିଦେଲେ, ତହିଁର ଅବଶିଷ୍ଟାଂଶ ଦଣ୍ଡକା ପ୍ରଦେଶରେ ଅବସ୍ଥିତ । ଦଣ୍ଡକା ଉତ୍ତରୁ କିଷ୍କିନ୍ଧା । ତହିଁର ଶାସକ ଥିଲେ ବାଳି ଓ ସୁଗ୍ରୀବ । ସେମାନଙ୍କର ରାଜଧାନୀ ଋଷ୍ୟମୂକ ବା ଋଷିମୁଖ ପର୍ବତରେ ଥିଲା । ଏହି ଋଷ୍ୟମୂକ ସାନ୍ନିଧ୍ୟରେ ସମ୍ଭବତଃ ଥିଲା ବା ତହିଁରୁ ବନିଃସୃତ ହୋଇଥିଲା ଋଷିକୁଲ୍ୟା ବା ଋଷିନଦୀ ।

ଅବନ୍ତୀର ଆଧୁନିକ ନାମ ମାଳବ ବା ଉଜ୍ଜୟିନୀ । ମାଳବର ସନ୍ନିହିତ ଦେଶ ବିଦର୍ଭ । ବିଦର୍ଭର ପ୍ରଧାନ ନଦୀ ବୈଦର୍ଭୀ (ଉଆର୍ଦ୍ଧା) । ବିଦର୍ଭ ବିସ୍ତୃତ ଥିଲା ମାଳବଠାରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ଏବଂ ଏହାକୁ ନାମାନ୍ତରେ କହାଯାଇ ପାରେ ଦଣ୍ଡକା ବୋଲି । ବିଦର୍ଭର ପୂର୍ବକୁ ଥିଲା କଳିଙ୍ଗ ଓ ଆନ୍ଧ୍ର । ପରନ୍ତୁ ବିଦର୍ଭର


ଭାରତବର୍ଷ
(ମହାଭାରତ)
ସିନ୍ଧୁ
ହରପ୍ପା
ମହେଞ୍ଜୋଦାରୋ
ବିଦେହ
ମଗଧ
ବଙ୍ଗ
ନର୍ମଦା
ପଶ୍ଚିମ ସମୁଦ୍ର
ପୂର୍ବ ସମୁଦ୍ର

ରାଜା ଥିଲେ ଚେଦୀ ଶିଶୁପାଳ । ସେ ଭାରତର ଚକ୍ରବର୍ତ୍ତିତ୍ୱ ଲାଗି ହସ୍ତିନାପତି ଯୁଧିଷ୍ଠିରଙ୍କ ସଙ୍ଗେ ପ୍ରତିଯୋଗିତା କରୁଥିଲେ । ଏହି ଶାଭିତ ଚେଦୀ ଶିଶୁପାଳଙ୍କ ଜଣେ ବଂଶଧର ପୂର୍ବୋପକୂଳରେ କଳିଙ୍ଗ ଦେଶ ସ୍ଥାପନ କରିଥିଲେ । ସେହି ବଂଶରେ ଜାତ ହୋଇଥିଲେ ଐତିହାସିକ ରାଜରତ୍ନ ଖାରବେଳ ଚେତ । ଶ୍ରୀକୃଷ୍ଣଙ୍କ ବୃଷ୍ଣି ବଂଶର ଏକ ଶାଖାର ନାମ ଅନ୍ଧକ । କଳିଙ୍ଗର ସନ୍ନିହିତ ଦକ୍ଷିଣ ଅଞ୍ଚଳରେ ଅନ୍ଧକ ଶାଖା ଆନ୍ଧ୍ର ଦେଶ ସ୍ଥାପନ କରିଥିଲେ ।

ମହାକବି ଭବଭୂତି ଜନ୍ମ ନେଇଥିଲେ ବିଦର୍ଭରେ । ତାଙ୍କ ଜନ୍ମଗ୍ରାମ ପଦ୍ମପୁର ଦକ୍ଷିଣାପଥ ଅନ୍ତଃପାତୀ ବିଦର୍ଭ ଦେଶସ୍ଥ (ସମ୍ବଲପୁର ଜିଲ୍ଲାରେ) ମହାନଦୀକୂଳରେ ଅବସ୍ଥିତ ଥିଲା । "ଅସ୍ତି ଦକ୍ଷିଣାପଥେ ବିଦର୍ଭେଷୁ ପଦ୍ମପୁରଂ ନାମ ନଗରଂ" (ମାଳତୀମାଧବ) ।

ପରବର୍ତ୍ତୀ କାଳରେ ବିଦର୍ଭ ବିଭକ୍ତ ହୋଇଥିଲା ତିନି ଖଣ୍ଡରେ: ମହାରାଷ୍ଟ୍ର (ରାଷ୍ଟ୍ରିକ), ମହାକୋଶଳ (ଦକ୍ଷିଣ କୋଶଳ) ଓ ମହାକାନ୍ତାର (କାନ୍ତାରକ) । ଅଶୋକଙ୍କ ଅନୁଶାସନରେ ଉଲ୍ଲେଖ ମିଳେ ରାଷ୍ଟ୍ରିକର ଏବଂ ସମୁଦ୍ରଗୁପ୍ତଙ୍କ ପ୍ରୟାଗ ଶିଳାଲେଖରେ ଉଲ୍ଲେଖ ମିଳେ* କୋଶଳକ ଓ କାନ୍ତାରକ ଉଭୟ ପ୍ରଦେଶର ।

* It appears, therefore, that upto about the 3rd century B. C. Mahakosala or Daksina Kosala had not assumed its name as such, and the country was generally designated by the term Vidarbha which (might have?) comprised a much bigger area than the present Berar."
(Journal of the Kalinga Historical Research Society—PP. 203-204—K. D. Bajpai, M. A., Curator, Curzon Museum, Mathura.)

ଏହି ତିନି ଖଣ୍ଡ ମଧ୍ୟରେ ମହାକୋଶଳ ଅପେକ୍ଷାକୃତ ଅଧିକ ପ୍ରଶସ୍ତ ଥିଲା ଏବଂ ଏହା ଶବରଭୂମିର ପ୍ରଶସ୍ତି ଓ ଶବମାନଙ୍କ ପ୍ରକୃତ ଅଧିକାର ଥିଲା । ଚେଦିବଂଶ କ୍ଷତ୍ରିୟମାନେ ବା ତ୍ରିପୁରୀର ଚେଦୀ ରାଜବଂଶ ମହାକୋଶଳର ପ୍ରଖ୍ୟାତ ଶାସକ ଥିଲେ ।

ମହାଭାରତରେ ବସ୍ତିକ ବା ମହାବସ୍ତରର ଉଲ୍ଲେଖ ନାହିଁ, କିନ୍ତୁ ଉଲ୍ଲେଖ ଅଛି ତ୍ରିପୁରୀ କୋଶଳର ଓ କାନ୍ତାରକର । କାନ୍ତାରକ ବେଣାତଟର ଅନ୍ତର୍ବର୍ତ୍ତୀ ଥିଲା । କୃଷ୍ଣବେଣା, ଭୀମବେଣା ଓ ତୁଙ୍ଗବେଣାର ସଂଯୋଗ ସ୍ଥଳୀ ବେଣାତଟ । ଅର୍ଥାତ୍ କୃଷ୍ଣା, ଭୀମା ଓ ତୁଙ୍ଗଭଦ୍ରାର ତୀରବର୍ତ୍ତୀ ପ୍ରଦେଶକୁ ବେଣାତଟ କହାଯାଉଥିଲା । ଏହି ତିନି ନଦୀର ଉତ୍ପତ୍ତି ସ୍ଥାନଠାରୁ ତ୍ରିପୁରୀ ବା କୋଶଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା ମହାକାନ୍ତାର । ଏହା ଆଧୁନିକ ବସ୍ତର, କଳାହାଣ୍ଡି ଓ ହାଇଦ୍ରାବାଦର ପୂର୍ବାଂଶ ।

"ଏତେ କଳିଙ୍ଗାଃ କୌନ୍ତେୟ ଯତ୍ର ବୈତରଣୀ ନଦୀ" (ବନପର୍ବ, ୧୧୪ ଅଧ୍ୟାୟ, ୪-୫ ଶ୍ଳୋକ) । ବୈତରଣୀବିଧୌତ ଅଞ୍ଚଳର ନାମ କଳିଙ୍ଗ । ମହେନ୍ଦ୍ରଗିରି ଅତିକ୍ରମ କଲେ କଳିଙ୍ଗର ସୀମା ଶେଷ ହୁଏ । ଅର୍ଥାତ୍ କଳିଙ୍ଗ ଗଙ୍ଗାନଦୀଠାରୁ ମହେନ୍ଦ୍ରଗିରି ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତହିଁରେ ଅବସ୍ଥିତ ଥିଲା ବୈତରଣୀ ନଦୀ । ଅଶୋକଙ୍କ ବେଳକୁ ଏହି କଳିଙ୍ଗ ପରାକ୍ରମ ଓ କଳେବର ବିସ୍ତାର କରି ବ୍ରହ୍ମଦେଶ, ଇଣ୍ଡୋଚୀନ, ଶ୍ୟାମ, ମଳୟ, ଯବ, ସୁମାତ୍ରା, ବାଲି ଓ ବୋର୍ଣ୍ଣିଓରେ "ପାରେସମୁଦ୍ର ସାମ୍ରାଜ୍ୟ" ସ୍ଥାପନ କରିଥିଲା । କଳିଙ୍ଗର କୋଷକୁ ପୁଷ୍ଟ କରୁଥିଲା ପୂର୍ବସମୁଦ୍ର ବାଣିଜ୍ୟର ପୁଷ୍କଳ ଧନ । କଳିଙ୍ଗନଗରର ରାଜପଥରେ ଜନସମାଗମର ଭୀଷଣ ଘନ-

ଗଢ଼ଳା ଥିଲା । ସେଠାରେ "ପରସ୍ପର ସଙ୍ଗେ ହେଉଥିଲା ଏକ ଯାନର ଚକ୍ରନେମି ସହିତ ଅନ୍ୟ ଯାନର ଚକ୍ରନେମି ।" ସମଗ୍ର ନାଗରିକ ବାହୁମାନ ଏକତ୍ରିତ ହେଲେ ଏକ ଶିବିର ବା ବସ୍ତ୍ରାବାସ ଗଠିତ ହେଉଥିଲା ।

ହୁଏନସାଂଙ୍କ ଅମଳରେ ଦେଶମାନଙ୍କର ରୂପ ଓ ବିସ୍ତାର ଭିନ୍ନପ୍ରକାର ଥିଲା । ଚିଲିକାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଥିଲା କଳିଙ୍ଗ । ଚିଲିକାଠାରୁ ମହାନଦୀ ପର୍ଯ୍ୟନ୍ତ ଥିଲା କଙ୍ଗୋଦ । ମହାନଦୀଠାରୁ ସୁବର୍ଣ୍ଣରେଖା ପର୍ଯ୍ୟନ୍ତ ଥିଲା ଉତ୍କଳ । ଆଧୁନିକ ଗଞ୍ଜାମ ଜିଲ୍ଲା ଓ ଆନ୍ଧ୍ରର ଉତ୍ତର-ପଶ୍ଚିମକୁ ସନ୍ନିହିତ ଥିଲା କୋଶଳ । ଗୋଦାବରୀ ଓ ଇନ୍ଦ୍ରାବତୀ ନଦୀମାନ କୋଶଳର ଦକ୍ଷିଣ ସୀମା ଥିଲା । ଏହାର ଉତ୍ତରପଶ୍ଚିମ ସୀମା ଲାଗିଥିଲା ବହ୍ଲିକ ରାଜ୍ୟକୁ । କୋଶଳର ଅଧିପତି ଥିଲେ ସୋମବଂଶୀ ଗୁପ୍ତମାନେ, ରାଜଧାନୀ ଥିଲା ସିରପୁର । ସାର ଏ. କନିଂହାମ୍ କହନ୍ତି, ଏହି ସୋମଗୁପ୍ତବଂଶ ଶାସନ କରନ୍ତି ୩୨୯ ଖ୍ରୀଷ୍ଟାବ୍ଦରୁ* । ସୋମଗୁପ୍ତବଂଶର ଅଧୀନ ଏହି କୋଶଳ ଅମ୍ବଳକୋଶଣଠାରୁ ଗୋଦାବରୀ-ଇନ୍ଦ୍ରାବତୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

ସମୁଦ୍ରଗୁପ୍ତ ରାଜତ୍ୱ କରନ୍ତି ୩୨୦ ରୁ ୩୮୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ପ୍ରୟାଗ ସ୍ତମ୍ଭଲେଖର ବର୍ଣ୍ଣନା ଅନୁସାରେ ସମୁଦ୍ରଗୁପ୍ତ "କୌଶଳୀକ ମହେନ୍ଦ୍ର"ଙ୍କୁ ଜୟ କରିଥିଲେ, କିନ୍ତୁ ତାଙ୍କ ରାଜ୍ୟ ନେଇ ନ ଥିଲେ । ଏଥିରୁ ଅନୁମାନ କରଯାଇ ପାରେ ଯେ ସୋମଗୁପ୍ତବଂଶର ପ୍ରଥମ ଇନ୍ଦ୍ରବଳ ସମୁଦ୍ରଗୁପ୍ତଙ୍କ ସମସାମୟିକ ବା ବିଜିତ ରାଜା

* A. S. R. I., Vol. XII, P. 87.

ଥିଲେ । "ଇନ୍ଦ୍ରବଳ" ମହେନ୍ଦ୍ର ନାମର ରୂପାନ୍ତର ? ମହେନ୍ଦ୍ର ବା ଇନ୍ଦ୍ରବଳଙ୍କ ବଂଶଧରମାନେ କୋଶଳରେ ଖ୍ରୀଷ୍ଟ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଶରଭପୁର ରାଜବଂଶ ସେମାନଙ୍କ ହସ୍ତରୁ ଶ୍ରୀପୁର କୋଶଳ ଛଡ଼ାଇ ନେଇଥିଲେ * । ସୋମଗୁପ୍ତ ବଂଶ ଛତିଶଗଡ଼-ସମ୍ବଲପୁର ଅଞ୍ଚଳକୁ ଅପସରି ଗଲେ । ଏତଦ୍ଦ୍ୱାରା କୋଶଳ ବିଭକ୍ତ ହୋଇଗଲା ଦୁଇ ଖଣ୍ଡରେ: ଶରଭପୁର କୋଶଳ ଓ ଛତିଶଗଡ଼-ସମ୍ବଲପୁର କୋଶଳ । ସୋମଗୁପ୍ତ ରାଜଧାନୀ ସ୍ଥାପିତ ହେଲା ଯଯାତି ନଗରରେ ବା ମହାନଦୀ କୂଳବର୍ତ୍ତୀ ସୋନପୁରରେ । ଏହି କୋଶଳ ଦକ୍ଷିଣ-କୋଶଳ ଆଖ୍ୟାରେ ନାମିତ ହୋଇଥିଲା ।

ପୂର୍ବୋକ୍ତ ପରିଭବରେ ସୋମବଂଶର ଦୀର୍ଘଶୌର୍ଯ୍ୟବୀର୍ଯ୍ୟର ବିଲୋପ ଘଟି ନ ଥିଲା । ଯଯାତି ନଗରରୁ ସେମାନେ ଶାସନ କଲେ ତ୍ରିକଳିଙ୍ଗ ଏବଂ ନିଜକୁ ବୋଲାଇଲେ 'ତ୍ରିକଳିଙ୍ଗାଧିପତି କୋଶଳେନ୍ଦ୍ର' । କାଳକ୍ରମେ ଚୌଦ୍ୱାର, ଯାଜପୁର ଓ ଭୁବନେଶ୍ୱରରେ ସେମାନଙ୍କର ନୂତନ ରାଜନିବେଶ ସ୍ଥାପିତ ହୋଇ-ଥିଲା । ସେମାନେ ଓଡ଼ିଶାର ପ୍ରକୃତ ନିର୍ମାତା ଏବଂ ଜନଗଣରେ 'କେଶରୀବଂଶ' ନାମରେ ବିଦିତ । ସେମାନେ ଓଡ଼ିଶାକୁ ତୋଳିଥିଲେ ତ୍ରିକଳିଙ୍ଗୋତ୍କଳକୋଶଳୋତ୍କଳ ଭିତ୍ତି ଉପରେ । ଚମତ୍କାର ଏହି ଓଡ଼ିଶା ଯେତିକି ସଭ୍ୟତା, କେତେ ସଂସ୍କୃତି ଓ କେତେ ଧର୍ମ ହଜମ କରି ପୁଷ୍ଟ ହୋଇଛି, ଅଭିନବ ବପୁ ଓ ପ୍ରାଣ ନେଇ ବିଗ୍ରହ ଧାରଣ କରିଛି । ତାହାର ସେହି ବିଗ୍ରହ ବିଭବର ପରାକାଷ୍ଠା ସୂଚିତ

* J. B. R. R. A. S., Vol. XVIII.

ହୁଏ ଲିଙ୍ଗରାଜ ଦେଉଳର ଶିଳ୍ପ ଗୃହୁଚଳାରୁ, ପୁରୀ ଓ କୋଣାର୍କ ଦେଉଳର ଅମର ବିନ୍ଧାଣୀରୁ । ସୋମବଂଶୀମାନେ ଓଡ଼ିଶାକୁ ଦେଇଛନ୍ତି ଏକ ଲିପି ଓ ଭାଷା, ଯାହା ଦକ୍ଷିଣର ଲିପି ଓ ଭାଷାରୁ ସମ୍ପୂର୍ଣ୍ଣ ପୃଥକ୍ । ଏହି ଅଭିନବ ସଭ୍ୟତା, ସଂସ୍କୃତି, ଶିଳ୍ପ, ସାହିତ୍ୟ, ଭାଷା ଓ ଲିପି ଓଡ଼ିଆଜାତିର ସମ୍ପଦ ହୋଇ ରହିଅଛି ।



( ୩ )

# ବୋଇତ ଯାତ୍ରା

ବାଲ୍ମୀକି ରାମାୟଣରେ ଦକ୍ଷିଣାପଥ ଚାରି ଭାଗରେ ବିଭକ୍ତ: ଜନସ୍ଥାନ, ଦଣ୍ଡକା, କିଷ୍କିନ୍ଧା ଓ ଦ୍ରମିଳକ । ଦ୍ରମିଳକର ଅନ୍ୟ ନାମ ଦ୍ରବିଡ଼, ଦ୍ରମିଡ଼, ଦ୍ରମିଳ ବା ତାମିଳକ । ତାମିଳକ ତାମ୍ରପର୍ଣ୍ଣୀ ବା ଲଙ୍କାର ଅନ୍ତର୍ଗତ ରାବଣ ରାଜ୍ୟ । କିଷ୍କିନ୍ଧା ତାମିଳକର ପ୍ରତିବେଶୀ ହୋଇଥିବାରୁ ରାବଣର ବିପକ୍ଷ ଥିଲା, ତେଣୁ ତାମ୍ରପର୍ଣ୍ଣୀ ଓ କିଷ୍କିନ୍ଧା ମଧ୍ୟରେ ଚିର ଶତ୍ରୁତା ଥିଲା । ସେହି ସୂତ୍ରରେ ସୁଗ୍ରୀବ ଓ ରାମଚନ୍ଦ୍ରଙ୍କ ମଧ୍ୟରେ ସହଜରେ ମିତ୍ରତା ହୋଇଥିଲା । ରାମାୟଣକାର ସେହି ଚାରି ଭୂଖଣ୍ଡରେ ଥିବା କୌଣସି ଦେଶାଙ୍କର ନାମ ବର୍ଣ୍ଣନା କରି ନାହାନ୍ତି ।

କିନ୍ତୁ ମହାଭାରତରୁ ଦକ୍ଷିଣାପଥର ଶତ ଶତ ରାଜ୍ୟର ନାମ ଏବଂ ଚକ୍ରବର୍ତ୍ତିତ୍ୱର ଚେଷ୍ଟାର ସୂଚନା ମିଳେ । ଚକ୍ରବର୍ତ୍ତିତ୍ୱ ଲାଭ ନିମନ୍ତେ ବିଦର୍ଭର ଶିଶୁପାଳ, ମଗଧର ଜରାସନ୍ଧ ଓ ହସ୍ତିନାର ଯୁଧିଷ୍ଠିର ପ୍ରାଣାନ୍ତ ଚେଷ୍ଟା କରୁଥିଲେ । ରାମାୟଣରେ ବର୍ଣ୍ଣିତ ରାମଚନ୍ଦ୍ରଙ୍କ ଅଶ୍ୱମେଧ ଅନୁଷ୍ଠାନ କେବଳ ସେହି ଚେଷ୍ଟାର ସୂଚନା ଦିଏ । ଏଥିରୁ ଜଣାଯାଏ ଯେ ରାମାୟଣ ମହାଭାରତର ପୂର୍ବେ ରଚିତ ହୋଇଥିଲା ।

ଶୈଶୁନାଗ, ନନ୍ଦ ବା ମୌର୍ଯ୍ୟବଂଶର, କିମ୍ବା ଦିଗ୍‌ବିଜୟୀ ସିକନ୍ଦରଙ୍କ, ଅଥବା ସିକନ୍ଦରଙ୍କ ପ୍ରତିପକ୍ଷ ପୁରୁ, ଯୌଧେୟ, ଶିବ, କ୍ଷୁଦ୍ରକ, ମାଳବକ ଆଦିଙ୍କର ମହାଭାରତରେ କୌଣସି ଉଲ୍ଲେଖ ନାହିଁ । ଦିଗନ୍ତବିଶ୍ରୁତକୀର୍ତ୍ତି ପାଟଳିପୁତ୍ର ବା ଉଜ୍ଜୟିନୀ ସମ୍ବନ୍ଧରେ ମଧ୍ୟ ସେହି ଗ୍ରନ୍ଥରେ କୌଣସି ଉଲ୍ଲେଖ ନାହିଁ । ସୁତରାଂ ପାଟଳିପୁତ୍ର ନଗରର ପ୍ରତିଷ୍ଠା ପୂର୍ବରୁ ମହାଭାରତ ପ୍ରଣୀତ ହୋଇଥିବାର ଯୁକ୍ତି-ସଙ୍ଗତ ସିଦ୍ଧାନ୍ତ କରିହେବ ପାରୁଛି ।

ବ୍ରାହ୍ମଣମାନଙ୍କର କ୍ଷମତା ତଥା ବେଦର ଅପୌରୁଷେୟତ୍ୱ ବିପକ୍ଷରେ ଜନବିବାଦର ବା ଜନବିଦ୍ରୋହର ପ୍ରାରମ୍ଭକୁ ମହାଭାରତ ବର୍ଣ୍ଣନା କରୁଛି କଳିର ଆରମ୍ଭ ବୋଲି । ଗୌତମ ବୁଦ୍ଧ ଓ ମହାବୀର ଜୀନଙ୍କ ପୂର୍ବରୁ ଏହି ବିଦ୍ରୋହ ରୂପଧାରଣ କରିଥିଲା । ତେବିଶ ତୀର୍ଥଙ୍କର ଓ ତେବିଶ ବୁଦ୍ଧ ଗୌତମ ଓ ମହାବୀରଙ୍କ ପୂର୍ବେ ସେହି ବିପ୍ଳବ ଆରମ୍ଭ କରିଥିଲେ ଏବଂ ନିଗମ ଧର୍ମକୁ ନିନ୍ଦା କରୁଥିଲେ । ଅହିଂସା, ସତ୍ୟ ଅସ୍ତେୟର ପ୍ରକର୍ଷ ପ୍ରଖ୍ୟାପନର ସୂତ୍ରପାତ ହୋଇଥିବ ଗୌତମ ଓ ମହାବୀରଙ୍କ ବହୁ ପୂର୍ବରୁ । ବୁଦ୍ଧ ଓ ଜୀନ ସେହି ମତବାଦକୁ ବିଶିଷ୍ଟ ରୂପ ମାତ୍ର ଦେଇଛନ୍ତି । ମହାଭାରତର କବି ନିଜେ ସେହି ମତବାଦ ବିଷୟରେ ସଚେତନ ଥିଲେ । ମହାଭାରତ ଗ୍ରନ୍ଥରେ ମଧ୍ୟ ଅହିଂସାର ପ୍ରକର୍ଷ ଘୋଷିତ ହୋଇଛି । ଗୌତମ ବା ମହାବୀରଙ୍କ ଅଥବା ଜୈନ ବା ବୌଦ୍ଧ ମତବାଦ ସମ୍ବନ୍ଧରେ ମହାଭାରତରେ କୌଣସି ଉଲ୍ଲେଖ ନାହିଁ । ଏଥିରୁ ଏହା ସିଦ୍ଧାନ୍ତ କରିବା ସହଜ ଯେ ଗୌତମ ଓ ମହାବୀରଙ୍କ ପୂର୍ବରୁ ଅହିଂସା

ମତର ଉତ୍କର୍ଷ ଦେଶରେ ପ୍ରତିଷ୍ଠା ଲାଭ କରିଥିଲା ଏବଂ ଗୌତମ ଓ ମହାବୀରଙ୍କ ପୂର୍ବେ ମହାଭାରତ ରଚିତ ହୋଇଥିଲା ।

ଯେଉଁ ବୁଦ୍ଧ ଓ ଜୈନଙ୍କ ସମ୍ବନ୍ଧରେ ରଚିତ ହୋଇଅଛି ଶତ ଶତ ପ୍ରାକୃତ ଭାଷାର ଗ୍ରନ୍ଥ, ସେହି ପ୍ରଖ୍ୟାତ ଦୁଇ ମହାପୁରୁଷଙ୍କ ବ୍ୟକ୍ତିତ୍ୱ ବା ମତବାଦ ସମ୍ବନ୍ଧରେ ମହାଭାରତ ଗ୍ରନ୍ଥରେ କୌଣସି ଉଲ୍ଲେଖ ନ ଥିବା ଏକ ଆଶ୍ଚର୍ଯ୍ୟ ବିଷୟ ପରି ଜଣାପଡ଼େ ।

ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀରେ ପାଣିନି "ଅଷ୍ଟାଧ୍ୟାୟୀ" ପ୍ରଣୟନ କରିଥିଲେ । ଆଶ୍ୱଲାୟନଙ୍କ ପ୍ରଣୀତ ଗୃହ୍ୟସୂତ୍ରରେ ତଥା ପାଣିନିଙ୍କ ପ୍ରଣୀତ ଅଷ୍ଟାଧ୍ୟାୟୀରେ ମହାଭାରତ ରଚନାର ଉଲ୍ଲେଖ ଦେଖାଯାଏ । ସୁତରାଂ, ଏଥିରୁ ସ୍ପଷ୍ଟ ପ୍ରମାଣିତ ହେବ ଯେ ମହାଭାରତ ପାଣିନି ତଥା ଆଶ୍ୱଲାୟନଙ୍କ ବହୁ ପୂର୍ବେ ପ୍ରଣୀତ ହୋଇଥିଲା ।

ରାମାୟଣ ଓ ମହାଭାରତ ଉଭୟ ଗ୍ରନ୍ଥର ବର୍ଣ୍ଣିତ କଥାବସ୍ତୁ ବହୁ ପ୍ରାକ୍ କାଳର ବିଶ୍ରୁତ ଘଟଣା । ସମ୍ଭବତଃ ତତ୍ ତତ୍ ଗ୍ରନ୍ଥର ପ୍ରଣୟନ ପୂର୍ବେ ଅନ୍ୟ ବିଲୁପ୍ତ ଗ୍ରନ୍ଥମାନଙ୍କରେ ସେହି ବିଶ୍ରୁତ ଘଟଣା ବର୍ଣ୍ଣିତ ହୋଇଥିଲା । ସେଥିପାଇଁ ଉଭୟ ଗ୍ରନ୍ଥକାର ବିଭିନ୍ନ ରଚନାର ଆଧାର ଉପରେ କଥାବସ୍ତୁ ପ୍ରଣୟନ କରିଥିବାରୁ ଦୁଇ ଗ୍ରନ୍ଥ ମଧ୍ୟରେ ମତଭେଦ ଦେଖାଯାଏ । ବାଲ୍ମୀକି ରାମାୟଣରେ ରାବଣ, କୁମ୍ଭକର୍ଣ୍ଣ, ବିଭୀଷଣ ଓ ସୂର୍ପଣଖା କୈକସୀର ସନ୍ତାନ ରୂପେ ବର୍ଣ୍ଣିତ ହୋଇଛନ୍ତି । ମହାଭାରତ, ୩ୟ ପର୍ବ, ୨୭୪ ଅଧ୍ୟାୟ, ରାମୋପାଖ୍ୟାନ, ୭ । ୮ ମ ଶ୍ଳୋକରେ ରାବଣ ଓ କୁମ୍ଭକର୍ଣ୍ଣ ପୁଷ୍ପୋ-ତ୍କଟାର ପୁତ୍ର ରୂପେ, ବିଭୀଷଣ ମାଳିନୀର ପୁତ୍ର ରୂପେ ଏବଂ ଖର-

ସୂର୍ପଣଖା ରାବଣର ସନ୍ତାନ ରୂପେ ବର୍ଣ୍ଣିତ ହୋଇଛନ୍ତି । ରାମାୟଣରେ ରାମ ବଧ କରନ୍ତି କୁମ୍ଭକର୍ଣ୍ଣଙ୍କୁ, ମହାଭାରତରେ ତାଙ୍କୁ ବଧ କରନ୍ତି ଲକ୍ଷ୍ମଣ । ସୁତରାଂ, ଏଥିରୁ ପ୍ରମାଣିତ ହେବ ଯେ ବ୍ୟାସ ରାମାୟଣର ଆଧାର ଉପରେ ନିର୍ଭର କରି ନାହାନ୍ତି ଏବଂ ଅନ୍ୟ କୌଣସି ଗ୍ରନ୍ଥରୁ କଥାବସ୍ତୁ ନେଇଛନ୍ତି । ଉଭୟ ଗ୍ରନ୍ଥ ପରସ୍ପରାପେକ୍ଷୀ ନୁହନ୍ତି ।

ମହାଭାରତର ଶାନ୍ତିପର୍ବ ୫୭ଶ ଅଧ୍ୟାୟରୁ ଜଣାପଡ଼େ ଯେ ଜେଷ୍ଠ ଉଶନା ଭାର୍ଗବ 'ରାଜଚରିତ' ନାମକ ଏକ ଗ୍ରନ୍ଥ ପ୍ରଣୟନ କରିଥିଲେ । ଶାନ୍ତିପର୍ବରେ ଏହି ଗ୍ରନ୍ଥ 'ଭାର୍ଗବ ରାମାୟଣ' ନାମରେ କଥିତ ହୋଇଛି । ଅଶ୍ୱଘୋଷଙ୍କ ବୁଦ୍ଧଚରିତରୁ ଜଣାଯାଏ ଯେ ବାଲ୍ମୀକିଙ୍କ କେତେ ପୂର୍ବପୁରୁଷ ଚ୍ୟବନ ଭାର୍ଗବ ବାଲ୍ମୀକିଙ୍କ ପୂର୍ବେ ରାମାୟଣ ରଚନା ନିମନ୍ତେ ଚେଷ୍ଟା କରିଥିଲେ ।

"ବାଲ୍ମୀକିରାଦୌ ଚ ସସର୍ଜ ପଦ୍ୟଂ ।
ଜଗ୍ରନ୍ଥ ଯନ୍ନ ଚ୍ୟବନୋ ମହର୍ଷିଃ ।"

ଏହି ଚ୍ୟବନ ମହର୍ଷିଙ୍କର ପୌତ୍ର ବା ପ୍ରପୌତ୍ର ବାଲ୍ମୀକି । ପିତାମହଙ୍କର କୃତ ସମାଜରେ ପ୍ରତିଷ୍ଠା ଲଭ କରି ପାରି ନ ଥିଲା । ଚ୍ୟବନଙ୍କ ନପ୍ତା ଏକ ଲଳିତ ସୁନ୍ଦର ମହାକାବ୍ୟ ରଚନା କରି ଏବଂ ତାକୁ ରାମାୟଣ ନାମ ଦେଇ ଆଦିକବି ଆଖ୍ୟାରେ ବର୍ଣ୍ଣିତ ହେଲେ ।

ମହାଭାରତକୁ ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀର ରଚନା ବୋଲି ପ୍ରତି-ପାଦନ କରିବା ନିମନ୍ତେ ପାଶ୍ଚାତ୍ୟ ପଣ୍ଡିତମାନଙ୍କର ଭ୍ରାନ୍ତ ପ୍ରୟାସ କଥା ସ୍ମରଣ କଲେ ହାସ୍ୟ ସମ୍ବରଣ କରି ହୁଏ ନାହିଁ । କାରଣ, ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକର ବହୁ ପୂର୍ବରୁ ମହାଭାରତ ଲବ୍ଧ କରି

ପାଉଥିଲା ସମାଜରେ ସାମୂହିକ ପ୍ରତିଷ୍ଠା । ତକ୍ଷଶିଳାବାସୀ ପରମ-ବୈଷ୍ଣବ ହେଲିଓଡୋରସ ("ତକ୍ଷଶିଳାର ଭାଗବତ ହେଲିଓ-ଡୋରସ") ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ତକ୍ଷଶିଳାର "ଯୋନ" ରାଜା ଆଣ୍ଟିଆଲକିଦାସଙ୍କ ଦ୍ୱାରା (ଗ୍ରୀକ୍ ରାଜା ଏଣ୍ଟିଆଲ୍‌କିଡୋସ) ବିଦିଶାର (ପୂର୍ବ ମାଳବ) ରାଜା କାଶୀପୁତ୍ର ଭାଗଭଦ୍ରଙ୍କ ଦରବାରରେ ରାଜଦୂତ ରୂପେ ନିଯୁକ୍ତ ହୋଇଥିଲେ । ସେତେବେଳକୁ ଯବନମାନେ ଭାରତରେ ନିବାସ ସ୍ଥାପନ କରିଥିଲେ । ସେମାନଙ୍କୁ ଭାରତୀୟ ସଂସ୍କୃତିକରଣ କର୍ମରେ ମହାଭାରତ ଅମୋଘ ଅସ୍ତ୍ର ରୂପେ କାର୍ଯ୍ୟ କରିଥିଲା ।

ହେଲିଓଡୋରସ (ବିଦିଶା ବା ପୂର୍ବ ମାଳବର) ବେଶ-ନଗରଠାରେ ବାସୁଦେବଙ୍କ ନିମନ୍ତେ ଏକ ଗରୁଡ଼ଧ୍ୱଜ (ସ୍ତମ୍ଭ ବା ମନ୍ଦିର) ନିର୍ମାଣ କରିଥିଲେ । ସେଥିରେ ଖୋଦିତ ହୋଇଥିଲା:

"ତିଣୀ ଅମୃତ ପଦାନି (ସୁ) ଅନୁଷ୍ଠିତାନି,
ନୟନ୍ତି ସ୍ୱଗ ଦମ ଚାଗ ଅପ୍ରମାଦ ।" *

ଏହି ଖୋଦିତ ଶ୍ଳୋକ ନିଆ ଯାଇଅଛି ମହାଭାରତର ସ୍ତ୍ରୀପର୍ବ, ୭ମ ଅଧ୍ୟାୟ, ୨୩-୨୪ ଶ୍ଳୋକରୁ । ଏହି ଦମ, ତ୍ୟାଗ ଓ ଅପ୍ରମାଦ ଭଗବଦ୍‌ଗୀତାର ପ୍ରତିପାଦ୍ୟ ନୀତି ।

ଋକ୍‌ବେଦର ପ୍ରଥମ ମଣ୍ଡଳ, ୧୦୪ ସୂକ୍ତ ଏବଂ ସପ୍ତମ ମଣ୍ଡଳ ୯୬ ସୂକ୍ତରେ ବର୍ଣ୍ଣିତ ଅଛି ଯେ କୃଷ୍ଣ, କୁଯ୍ୟବ ଓ ଅଯୁ

* ତ୍ରିଣ୍ୟମୃତପଦାନି ସ୍ୱନୁଷ୍ଠିତାନି,
ନୟନ୍ତି ସ୍ୱର୍ଗଂ ଦମତ୍ୟାଗାପ୍ରମାଦାଃ ।

ଭାରତର ଜନ ଦସ୍ୟୁ ଥିଲେ । ଏମାନେ ଯୁଦ୍ଧ କରୁଥିଲେ ଆର୍ଯ୍ୟ-ମାନଙ୍କ ସଙ୍ଗେ । କୃଷ୍ଣ ଅଂଶୁମତୀ (ଯମୁନା) କୂଳରେ ବାସ କରୁଥିଲେ । ତାଙ୍କର ଥିଲେ ଦଶ ହଜାର ସୈନ୍ୟ, ଯେଉଁମାନେ ସର୍ବଦା ଯୁଦ୍ଧାର୍ଥ ପ୍ରସ୍ତୁତ ଥିଲେ ଏବଂ ସୁବିଧା ପାଇଲେ ଆର୍ଯ୍ୟମାନଙ୍କର ଗ୍ରାମନଗର ଲୁଣ୍ଠନ କରୁଥିଲେ । ଏହି ଦସ୍ୟୁମାନଙ୍କୁ ଦମନ କରିବା ନିମନ୍ତେ ଆର୍ଯ୍ୟ ଦଳପତି ବା ରାଜାମାନଙ୍କୁ ଇନ୍ଦ୍ର ସାହାଯ୍ୟ କରୁ-ଥିଲେ । ସୁଦାସଙ୍କ ପିତା ଦିବୋଦାସଙ୍କୁ ସେ ଶହେ ଗୋଟି ପ୍ରସ୍ତର ନିର୍ମିତ ଦୁର୍ଗନଗର ଦେଇଥିଲେ ଏବଂ କୃଷ୍ଣବଙ୍କୁ ବଧ କରିଥିଲେ । (ଋକ୍‌ବେଦ, ପ୍ରଥମ ମଣ୍ଡଳ, ୧୭୪ ସୂକ୍ତ; ଦଶମ ମଣ୍ଡଳ, ୪୯ ସୂକ୍ତ) ।

ଏହି ଇନ୍ଦ୍ର ଦେବତାମାନଙ୍କର ରାଜା ବା ଦେବରାଜ ଥିଲେ । ସ୍ୱର୍ଗ ଥିଲା ଇରାନରେ ବା ବେବିଲନଠାରେ, ଯେଉଁଠାରେ ସମ୍ରାଟ୍ ଇନ୍ଦ୍ର ରହୁଥିଲେ । ଦସ୍ୟୁଦମନରେ ଅର୍ଥାତ୍ ଭାରତବିଜୟରେ ସେ ସାହାଯ୍ୟ କରୁଥିଲେ ଆର୍ଯ୍ୟମାନଙ୍କୁ । ବୃଷ୍ଟିପତି, ଇନ୍ଦ୍ର ଥିଲେ ବଜ୍ରର (ବୈଦ୍ୟୁତିକାସ୍ତ୍ର ଓ ଆଟମ୍ବ୍ରହ୍ମାସ୍ତ୍ରର) ଅଧିକାରୀ । ତେଣୁ ସୁଦାସ ସମର୍ଥ ହୋଇଥିଲେ କେବଳ ଗୋଟିଏ ଯୁଦ୍ଧରେ ଷାଠିଏହଜାର ଶତ୍ରୁ-ସୈନ୍ୟ ଧ୍ୱଂସ କରିବାକୁ (ଋକ୍‌ବେଦ, ସପ୍ତମ ମଣ୍ଡଳ, ୧୮ ସୂକ୍ତ), କୁତ୍ସ ଧ୍ୱଂସ କରିଥିଲେ ପଚାଶ ହଜାର ଦସ୍ୟୁ କେବଳ ଗୋଟିଏ ଯୁଦ୍ଧରେ (ଋକ୍‌ବେଦ, ଚତୁର୍ଥ ମଣ୍ଡଳ, ୧୬ ଓ ୨୮ ସୂକ୍ତ) । ସୁତରାଂ, ଦୀର୍ଘକାଳ ଯୁଦ୍ଧ କରିବା ବା ପ୍ରତିରୋଧ କରିବା ଦସ୍ୟୁମାନଙ୍କ ପକ୍ଷରେ ଅସମ୍ଭବ ଥିଲା । କେତେକ ଦସ୍ୟୁ ସ୍ଥାନାନ୍ତରକୁ ପଳାୟନ କଲେ । କେତେକେ ପ୍ରୀତି ଘୋଷଣା କରି ଆର୍ଯ୍ୟମାନଙ୍କ ସଦ୍ଭାବରେ

ରହିଲେ । ଅଥର୍ବ ବେଦର ଊନବିଂଶ କାଣ୍ଡ ସପ୍ତମାନୁବାକ୍ ଅଷ୍ଟମ ସୂକ୍ତ ପ୍ରଥମ ମନ୍ତ୍ର ଏହି ପ୍ରୀତି ସ୍ୱୀକାର କରେ ।

ପ୍ରିୟଂ ମା କୃଣୁ ଦେବେଷୁ ପ୍ରିୟଂ ରାଜସୁ ମା କୃଣୁ ।
ପ୍ରିୟଂ ସର୍ବସ୍ୟ ପଶ୍ୟତଃ ଉତ ଶୂଦ୍ର ଉତାର୍ଯ୍ୟେ ।

[ ହେ ଭଗବନ୍, ଦେବ (ବ୍ରାହ୍ମଣ) ଓ ରାଜାଙ୍କ ମଧ୍ୟରେ ଭବଦନୁଗ୍ରହ ସୀମିତ ନ ହେଉ, ତାହା ବିସ୍ତାରିତ ଆର୍ଯ୍ୟ ଓ ଶୂଦ୍ର (ଅନାର୍ଯ୍ୟ ଦାସ) ସମସ୍ତଙ୍କ ମଧ୍ୟରେ ସମାନ ରୂପେ । ]

କି ପରମ ପ୍ରୀତିରେ ସାହଚର୍ଯ୍ୟରେ ବାସ କରୁଥିଲେ ଆର୍ଯ୍ୟ ଅନାର୍ଯ୍ୟ, ରାଜା ଦାସ, ବ୍ରାହ୍ମଣ ଶୂଦ୍ର !

ବେଦମାନଙ୍କରେ କେତେକ ନରଶଂସୀ ଗାଥା ରହିଅଛି । ଭାଟମାନେ ତହିଁର କୀର୍ତ୍ତନ କରୁଥିଲେ । ସେହି ଗାଥାମାନଙ୍କର ଅବଲମ୍ବନରେ କିମ୍ବା ବର୍ଦ୍ଧୀକରଣରେ ସମ୍ଭବତଃ ଉଭୟ ଇତିହାସ-ସାହିତ୍ୟ, ରାମାୟଣ ଓ ମହାଭାରତ ଲିଖିତ ହୋଇଥିଲା । କିଏ କହିପାରେ, ମହାଭାରତ ଗ୍ରନ୍ଥ ଦସ୍ୟୁ କୃଷ୍ଣ ଓ ସମ୍ରାଟ୍ ଇନ୍ଦ୍ରଙ୍କର ଗାଥାର ରୂପାନ୍ତର ହୋଇ ନ ଥିବ ! ଇରାନ୍‌ବାସୀ ଇନ୍ଦ୍ରଙ୍କର ପାଣ୍ଡୁତା ଆରୋପିତ ହୋଇନାହିଁ ପଣ୍ଡୁଙ୍କ ଠାରେ ! ପାଣ୍ଡବମାନେ ପରୀକ୍ଷିତଙ୍କୁ ସିଂହାସନ ଦେଇ ସ୍ୱର୍ଗକୁ ପ୍ରସ୍ଥାନ କଲେ । ଇନ୍ଦ୍ର କୁତ୍ସବଙ୍କୁ ବଧ କରି ରାଜ୍ୟ ଦେଇଗଲେ ଦୁର୍ଯ୍ୟୋଣିଙ୍କୁ ଏବଂ ପ୍ରସ୍ଥାନ କଲେ ଇରାନ-ସ୍ୱର୍ଗକୁ ( ଋକ୍‌ବେଦ, ପ୍ରଥମ ମଣ୍ଡଳ, ୧୭୪ ସୂକ୍ତ ଓ ଦଶମ ମଣ୍ଡଳ, ୪୯ ସୂକ୍ତ ) ।

ଏକ ବିଖ୍ୟାତ କ୍ଷତ୍ରିୟ ବଂଶ ବେଦରେ ସଙ୍କୀର୍ତ୍ତିତ ହୋଇଛନ୍ତି । ବହ୍ଲିକ ପ୍ରତୀପୀୟ, ପରୀକ୍ଷିତ ଓ ଜନମେଜୟ ସେହି ବଂଶର ବରିଷ୍ଠ

ରାଜା ଥିଲେ । ଅଥର୍ବବେଦ ବିଶ୍ୱଜନୀନ ରାଜା ରୂପେ ପରୀକ୍ଷିତଙ୍କର ପ୍ରଶସ୍ତି ଗାନ କରେ । ତାଙ୍କ ରାଜ୍ୟରେ ଦୁଗ୍ଧ ଓ ମଧୁ ବହି ଯାଉଥିଲା । ପରୀକ୍ଷିତଙ୍କ ପୁତ୍ର ଜନମେଜୟ ସମଗ୍ର ଧରାକୁ ବଶୀଭୂତ ଓ ନିଃକ୍ଷତ୍ରିୟ କରିଥିଲେ । ଜନମେଜୟଙ୍କ ବଂଶଧରମାନେ ଏକ ବିଷମ ସମର ଫଳରେ ସର୍ପୀୟ ବଂଶଦ୍ୱାରା କୁରୁକ୍ଷେତ୍ରରୁ ବିତାଡ଼ିତ ହୋଇଥିଲେ । ଏହି ପରୀକ୍ଷିତ-ଜନମେଜୟଙ୍କ କଥାବସ୍ତୁ ମହାଭାରତ କଥାର ଆଦର୍ଶ ଓ ଅବଲମ୍ବନ ହୋଇଥାଇ ପାରେ !

ହେଲେ ହେଁ, ମହାଭାରତ ଭାରତର ଧର୍ମଗ୍ରନ୍ଥ ! ଭାରତର ଜାତୀୟ ଓ ସାମାଜିକ ଜୀବନ ଗଠନରେ ଅସୀମ ତହିଁର ପ୍ରଭାବ ! ତାହା ଧରି ରଖିଛି ଭାରତର ଜାତୀୟ ସତ୍ତାକୁ ! ମହାଭାରତ ମହାଭାରତୀୟ ଜାତିର ଇତିହାସ ଓ ସଂସ୍କୃତିର ପ୍ରତୀକ ।

ଏହି ପରିଚ୍ଛେଦର ବର୍ଣ୍ଣିତବ୍ୟ ବିଷୟବସ୍ତୁର ଅବତାରଣା ସକାଶେ ଏପର୍ଯ୍ୟନ୍ତ ଆପାତତଃ ଅବାନ୍ତର କଥାମାନ କହାଗଲା । ବିଦର୍ଭରାଜ ଖ୍ୟାତ ଶିଶୁପାଳ ଚେଦୀଙ୍କର ଏକ ଶାଖା କୋଶଳ ଓ କଳିଙ୍ଗ ଦେଶ ସ୍ଥାପନ କରିଥିଲେ । ଏମାନେ ଆର୍ଯ୍ୟୋଦ୍ଭବ ଥିଲେ । ବୃଷ୍ଣିଗୋଷ୍ଠୀୟ ଶ୍ରୀକୃଷ୍ଣଙ୍କ ବଂଶୀୟ ଅନ୍ଧକମାନେ ସ୍ଥାପନ କରିଥିଲେ ଆନ୍ଧ୍ରଦେଶ । ଆନ୍ଧ୍ର ଓ ତାମିଲଙ୍କ ତଥା ତାମ୍ରପର୍ଣ୍ଣୀ ସମ୍ଭବତଃ ଦ୍ରାବିଡ଼ ରାଜ୍ୟ ଥିଲା । କୁରୁବଂଶୀୟ ନରଶଂସୀଗାଥାର କଥକ ଭାଟମାନେ ଶ୍ରୀକୃଷ୍ଣଙ୍କ ଯାଦବବଂଶକୁ ବ୍ରାତ୍ୟ କ୍ଷତ୍ରିୟ ବୋଲି ବର୍ଣ୍ଣନା କରିଛନ୍ତି ।

ଏହି ଆର୍ଯ୍ୟ ଓ ଦ୍ରାବିଡ଼ମାନେ ସମସ୍ତେ ଶିଖିଥିଲେ ବିଶାଳ ଜଳଯାନ ଓ ବ୍ୟୋମଯାନର ନିର୍ମାଣ । ଋକ୍‌ବେଦ ରଚନାକାଳରୁ

ସେମାନଙ୍କୁ ସେତୁ ଉନ୍ନତ ବିଜ୍ଞାନ ଜଣା ଥିଲା । ରାଜର୍ଷି ତୁଗ୍ରଙ୍କ ପୁତ୍ର ଭୁଜ୍ୟୁ ବିଶାଳ ସାମୁଦ୍ରିକ ଜଳଯାନରେ ଦେଶାନ୍ତରକୁ ଯାଉଥିଲେ (ଋକ୍‌ବେଦ, ପ୍ରଥମ ମଣ୍ଡଳ, ୧୧୬ ସୂକ୍ତ) । ରାବଣ ଓ ରାମଚନ୍ଦ୍ର ପୁଷ୍ପକବିମାନ ବ୍ୟବହାର କରୁଥିଲେ । ମହାଭାରତର ଉଦ୍ୟୋଗ-ପର୍ବର ୧୧୨ ଅଧ୍ୟାୟର ବର୍ଣ୍ଣନାରୁ ଏବଂ ଅନ୍ୟାନ୍ୟ ବର୍ଣ୍ଣନାରୁ ବୁଝାପଡ଼େ ଯେ ବ୍ୟୋମଯାନ ଆର୍ଯ୍ୟମାନଙ୍କର ପ୍ରତ୍ୟକ୍ଷ ଅନୁଭୂତିର ବିଷୟ ଥିଲା:—

"କ୍ରମମାଣସ୍ୟ ତେ ରୂପଂ ଦୃଶ୍ୟତେ ଭାସ୍କରସ୍ୟ ବୈ (ପୂର୍ବାହ୍ନେ) ।
ପକ୍ଷବାତପ୍ରଣୁନ୍ନାନାଂ ବୃକ୍ଷାଣାମନୁଗାମିନାଂ ।
ପ୍ରସ୍ଥିତାନାଂ ସମାମିବ ପଶ୍ୟାମୀହ ଗଚ୍ଛଂ ଖଗ । ୭ ।"

"ରାବଣର ପୁଷ୍ପକବିମାନ ନଭୋମଣ୍ଡଳରେ ମେଘଖଣ୍ଡବତ୍ ସଂକ୍ରମଣ କରୁଥିଲା । ତାହାର ଦୀପ୍ତି ସୂର୍ଯ୍ୟାଂଶୁବିମୂର୍ତ୍ତିଭ ଥିଲା । ସେଥିରେ ବିବିଧ ପ୍ରକାର ଉଜ୍ଜ୍ୱଳ ସୁବର୍ଣ୍ଣ ମଣିମାଣିକ୍ୟରତ୍ନ ଖଚିତ ଥିଲା । ବିମାନ ଏକାଧିକ ପ୍ରକୋଷ୍ଠରେ ବିଭକ୍ତ ଥିଲା । ବାୟୁସଞ୍ଚାଳନ ସକାଶେ ସେଥିରେ ଅନେକ ଗବାକ୍ଷ ଥିଲା । ଚିତ୍ତବିନୋଦନ ନିମନ୍ତେ ତହିଁରେ ଲାଗିଥିଲା ମୃଦୁମଧୁରକଳନାଦିନୀ ଘଣ୍ଟିକା, ଯାହା ଆକାଶଗତିକାଳରେ ଶୁଭୁଥିଲା କିଙ୍କିଣଧ୍ୱନି । ଆକାଶମାର୍ଗରେ ପୁଷ୍ପକ ରାଜହଂସ ପରି ଦିଶୁଥିଲା । ଭୂମିରୁ ଉତ୍ଥାନ ବେଳେ ତାହା ଆକାଶକୁ କ୍ଷିପ୍ରଲମ୍ଫ ଦେଉଥିଲା ।"

(ଯୁଦ୍ଧକାଣ୍ଡ, ସର୍ଗ ୧୨୩, ଶ୍ଳୋକ ୧୧-୨୪) ।

ଚେଦୀରାଜଙ୍କର ବାୟୁଯାନ ସ୍ଫଟିକରେ ନିର୍ମିତ ହୋଇଥିଲା ।

"ବୈଦିବୋପବେଶଗ୍ୟଂ ଦିବ୍ୟଂ ଭ୍ରାମାକାଶେ ସ୍ଫାଟିକଂ ମହତ୍ ।
ଆକାଶଗଂ ଭ୍ରାଂ ମଦଦ୍ଭୂଂ ବିମାନମୁପପଦ୍ୟତେ ।"
( ମହାଭାରତ, ଆଦିପର୍ବ, ଅଧ୍ୟାୟ ୬୪, ଶ୍ଲୋକ ୧୩) ।

ଏଥିରୁ ବିମାନ ସ୍ଫଟିକ ନିର୍ମିତ ଥିବାରୁ ଅଦାହ୍ୟ ଥିଲା ।

ବିମାନମାନଙ୍କର ଆକାର ସାଧାରଣତଃ ପକ୍ଷୀର ଆକାର ପରି, ରାଜହଂସ ବା ଗରୁଡ଼ର ରୂପ ପରି ଥିଲା । ପକ୍ଷୀର ମସ୍ତକ ଓ ଚଞ୍ଚୁ ବାୟୁସମୁଦ୍ରକୁ ଭେଦ କରୁଥିଲା । ପଶ୍ଚାତରୁ ପକ୍ଷୀର ପୁଚ୍ଛ ବେଗ ଦେଉଥିଲା ଏବଂ ପକ୍ଷୀର ଦୁଇ ଡେଣା ସଂକ୍ରମଣଗତି ଦେଉଥିଲା ।

ଶ୍ରୀକୃଷ୍ଣ ଏପ୍ରକାର ଏକ ଗରୁଡ଼ ବିମାନ ବ୍ୟବହାର କରୁଥିଲେ । ତାହାଙ୍କର ପୁଣି ଥିଲା ଦୂରବାର୍ତ୍ତାବିକ୍ଷେପକ ଏକ ମନୋଯାନ, ଯାହା ବଳରେ ସେ ଜାଣି ପାରିଲେ କୁରୁସଭାରେ ଅପମାନିତା ଦ୍ରୌପଦୀଙ୍କର ବିବସନବାର୍ତ୍ତା ।

ପାଶ୍ଚାତ୍ୟ ବିଜ୍ଞାନବଳରେ ନିର୍ମିତ ବିମାନଗୁଡ଼ିକ ଏବେ ଦ୍ରୁତଗତିରେ ଆକାଶମାର୍ଗରେ ଯିବାବେଳେ ବାୟୁସମୁଦ୍ରର ତରଙ୍ଗର ତୀବ୍ର ପ୍ରତିଘାତରେ ପୋଡ଼ିଯାଉଛି । ଭାରତର ପ୍ରାଚୀନ ବିମାନ ଅଦାହ୍ୟ ଓ ଅଭଙ୍ଗୁର ଥିଲା । ମହୀଶୂର ଆନ୍ତର୍ଜାତିକ ସଂସ୍କୃତ ଗବେଷଣା ପରିଷଦର ପରିଚାଳକ ଏବେ ଭରଦ୍ୱାଜ ଋଷିଙ୍କ ପ୍ରଣୀତ "ରତ୍ନଦୀପିକା" ନାମକ ଏକ ସଂସ୍କୃତ ଗ୍ରନ୍ଥ ଆବିଷ୍କାର କରିଛନ୍ତି । ସେଥିରେ ଦେବନାଗରୀ ଲିପିରେ ଆଠ ଅଧ୍ୟାୟ ଓ ୫୦୦ ଶ୍ଲୋକ ଅଛି । ରତ୍ନଦୀପିକା 'ସୁନ୍ଦର', 'ଶକୁନ' ଓ 'ରୁକ୍ମ' ତିନିପ୍ରକାର ବିମାନର ବର୍ଣ୍ଣନା କରିଛି । ଗ୍ରନ୍ଥଟି ବିମାନଚାଳସମ୍ବଳିତ ।

ସେଥିରେ ଅନ୍ୟାନ୍ୟପ୍ରକାର ବିମାନର ବର୍ଣ୍ଣନା ସଙ୍ଗେ କୃତ୍ରିମ ବର୍ଷା କରିବାର ଉପାୟ ମଧ୍ୟ ଲିଖିତ ଅଛି । ଋଷିମାନଙ୍କ କୃତ୍ରିମ ସୃଷ୍ଟି କମ୍ବଦନ୍ତୀ ଋତ୍ନଦୀପିକାର ବର୍ଣ୍ଣନାରୁ ସତ୍ୟ ବୋଲି ପ୍ରତୀତ ହୁଏ । ରତ୍ନଦୀପିକାରେ ଲିଖିତ ଅଛି, କପରି ବିମାନଗୁଡ଼ିକୁ ଅଦାହ୍ୟ, ଅଭଙ୍ଗୁର ଓ ତୀବ୍ର ଘାତପ୍ରତିଘାତ ସହନଶୀଳ କରିବାକୁ ହେବ । ବିମାନକୁ ୩୧ ବିଭିନ୍ନ ଅଂଶରେ ବିଭକ୍ତ କରି ପ୍ରତ୍ୟେକ ଅଂଶର ନାମକରଣ ମଧ୍ୟ ରତ୍ନଦୀପିକାରେ ରହିଛି । ଏହି ବିଭିନ୍ନ ୩୧ ଅଂଶର ବିଶଦ ବିବରଣ, ବିମାନ ନିର୍ମାଣୋପଯୋଗୀ ବିଭିନ୍ନ ଧାତବ ପଦାର୍ଥର ବିବରଣ ଇତ୍ୟାଦି ବିଷୟ ମଧ୍ୟ ଭରଦ୍ୱାଜଙ୍କ ସେହି ରତ୍ନ-ଦୀପିକାରୁ ମିଳୁଛି । ଆଧୁନିକ ପାଶ୍ଚାତ୍ୟ ବିଜ୍ଞାନୀମାନଙ୍କ ଅପେକ୍ଷା ପ୍ରାଚୀନ ଭାରତୀୟମାନେ ବ୍ୟୋମଯାନ ନିର୍ମାଣରେ ଅଧିକ ପଟୁ ଥିଲେ ! ("ସମାଜ" ଦୈନିକପତ୍ର—ତା: ୨୩-୮-୫୨-ପୃଷ୍ଠା ୨) ।

ଯେଉଁ ଭାରତବାସୀ ଏପ୍ରକାର ବାୟୁବିମାନ ନିର୍ମାଣପଟୁ ଥିଲେ, ଦୁସ୍ତର ସାଗର ତରଣ ନିମନ୍ତେ ସେମାନେ କିମ୍ବିଧ ଅର୍ଣ୍ଣବ-ପୋତ ନିର୍ମାଣ କରିଥିବେ ! ପାଶ୍ଚାତ୍ୟ ଅର୍ଣ୍ଣବପୋତର ଆରମ୍ଭ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ, ଯେତେବେଳେ ଫିନିସ୍, ମିଶର ଓ ଗ୍ରୀସ୍ ଜଳଖଣ୍ଡ ତରଣର ଉପାୟ ଆବିଷ୍କାର କଲେ । ଖ୍ରୀଷ୍ଟୀୟ ଷୋଡ଼ଶ ଶତକ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଅର୍ଣ୍ଣବଯାନ ବିଶେଷ କିଛି ଉନ୍ନତି କରି ନ ଥିଲା । ଦୁସ୍ତର ସାଗରସନ୍ତରଣରେ ଅଥବା ସାମୁଦ୍ରିକ ଝଡ଼-ତୋଫାନ ପ୍ରତିମୁଖରେ ପାଶ୍ଚାତ୍ୟ ଅର୍ଣ୍ଣବଯାନ ଅତି ଅକର୍ମଣ୍ୟ ଓ ଅସମର୍ଥ ଥିଲା । ଭାରତୀୟ ଅର୍ଣ୍ଣବଯାନ ବିଜ୍ଞାନର ଆରମ୍ଭ ହୁଏ ଋକ୍‌ବେଦ ରଚନାକାଳର ପୂର୍ବରୁ ଅଥବା ଆଜକୁ ଅନ୍ତତଃ

ଛଅ ହଜାର ବର୍ଷ ପୂର୍ବେ । ଋକ୍‌ବେଦ ପ୍ରଥମ ମଣ୍ଡଳ ୧୧୬ ସୂକ୍ତରେ ବର୍ଣ୍ଣିତ ହୋଇଛି ଭୁଜ୍ୟୁଙ୍କ ଅର୍ଣ୍ଣବଯାତ୍ରା, ଚତୁର୍ଥ ମଣ୍ଡଳ ୫୫ ସୂକ୍ତରେ ବର୍ଣ୍ଣିତ ହୋଇଛି ଆର୍ଯ୍ୟମାନଙ୍କ ପାରେସମୁଦ୍ର ବାଣିଜ୍ୟ । ମହାଭାରତ ଆଦିପର୍ବ ୧୫୪ ଅଧ୍ୟାୟ ୫-୭ ଶ୍ଳୋକରେ ବର୍ଣ୍ଣିତ ହୋଇଛି ଭାରତୀୟ ଅର୍ଣ୍ଣବପୋତର ବିଶାଳତା ଓ ସମୁଦ୍ରବକ୍ଷେପିତା । ପ୍ରବଳ ପ୍ରଭଞ୍ଜନ-ସାମୁଦ୍ରିକ ଘୂର୍ଣ୍ଣିବାୟୁ-ଉତ୍ତାଳତରଙ୍ଗ-ପ୍ରତିରୋଧୀ ଅର୍ଣ୍ଣବପୋତ-ମାନଙ୍କରେ ଖଞ୍ଜା ଯାଉଥିଲା ଯନ୍ତ୍ର, ଚୂଡ଼ାରେ ଶୋହୁଥିଲା ବିଚିତ୍ର ପାରମ୍ପରିକ କେତନ ।

କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ପୋତନିର୍ମାଣ ତଥା ପାରେସମୁଦ୍ର ବାଣିଜ୍ୟ ନିୟନ୍ତ୍ରଣ ବିଷୟରେ ବହୁସଂଖ୍ୟକ ଶ୍ଳୋକ ନିବଦ୍ଧ ଅଛି । ସେଥିରୁ ସ୍ପଷ୍ଟ ଜଣାପଡ଼େ ଯେ ଭାରତରେ ସେତେବେଳେ ବିସ୍ତୃତ ସାମୁଦ୍ରିକ ବାଣିଜ୍ୟ ଚାଲୁଥିଲା ଏବଂ ଭାରତୀୟମାନେ ପ୍ରକାଣ୍ଡକାୟ ଅର୍ଣ୍ଣବଯାନ ନିର୍ମାଣ କରୁଥିଲେ ।

ଅର୍ଣ୍ଣବପୋତ ନିର୍ମାଣରେ ଓ ପାରେସମୁଦ୍ର ବାଣିଜ୍ୟରେ ଓଡ଼ିଶାବାସୀ ବିଲକ୍ଷଣ କୃତିତ୍ୱ ଲାଭ କରିଥିଲେ, ତାହାର ପ୍ରମାଣ ରହିଛି ବ୍ରହ୍ମାଣ୍ଡ ପୁରାଣରୁ ଉଦ୍ଧୃତ ନିମ୍ନ କତିପୟ ଶ୍ଳୋକରେ:

ଚିଲ୍‌କା ହ୍ରଦେ ସହସ୍ରଂ ତୁ ସୁପୋତାଃ ଜଳଗାମିନଃ ।
ତାମ୍ରାଚ୍ଛାଦିତା ବୈ ଦ୍ରୁତାଃ ସହସ୍ରଜନଧାରକାଃ ।
ବହୁରତ୍ନାନ୍ୱିତା ଶୀଘ୍ରାଃ ଯନ୍ତ୍ରଗାଃ ଗୃହକାଣ୍ଡିତାଃ ।
ବାଣିଜ୍ୟକରଣେ ଶକ୍ତାଃ ବିପଞ୍ଚଶିଖରାନ୍ୱିତାଃ ।
ଦ୍ୱୀପାନ୍ତରଗତାୟାତାଃ ଯାବାମଳୟସିଂହଳ—
ଗଙ୍ଗାସାଗରଚୀନେଷୁ ଯଚ୍ଛନ୍ତ୍ୟା ତଥାଗତାଃ ।

ଦେଶଦେଶାନ୍ତ ଦ୍ରବ୍ୟାଣି ବହନ୍ତ୍ୟୋ ଯାନ୍ତି କେଽପି ବା,
ଜଳଯାନ୍ତ୍ରେ ତୁ ବା କେଚିତ୍ତ୍ ମଜ୍ଜନୈଃ ଗୁପ୍ତକୌଶଳୈଃ ।
ଲୁକ୍କାୟିତାଃ ଧ୍ରୁତପୂର୍ବଂ ମହାଶ୍ଚର୍ଯଂ ପରଂଗତାଃ ।
କୁର୍ମପଯନ୍ତ୍ରଂ ନାବଯନ୍ତ୍ରଂ ମତ୍ସ୍ୟରୂପଂ ତୁ ପାକ୍ଷିକଂ ।
ହ୍ରସ୍ୱଂ କାଷ୍ଠମୟଂ ଦେହଂ ତାମ୍ରପଟ୍ଟସୁରକ୍ଷିତଂ ।
ଲୌହଚକ୍ରଗତଂ ଯନ୍ତ୍ରେ ଚକ୍ରବ୍ୟୂହସମନ୍ୱିତଂ ।
ବାୟୁନାଳପରିଣଦ୍ଧଂ ସଂକୋଚବସ୍ତ୍ରବାକରଂ ।
ବସ୍ତ୍ରୁଟନ୍ତୌ ମଜ୍ଜନଂ କ୍ଷୟଂ ସଂକୋଚେ ଭାସମାନକଂ ।
ଧାପନେ ଜ୍ୱଳନେ ଚୈବ ଚକ୍ରବ୍ୟୂହାଦିଗୃହନେ
କୁଞ୍ଚନେ ଚୋଟନେ ବାପି ଜ୍ୱଳନେ ପ୍ରେରଣଂ ଚରେତ୍ତୁ ।

ବ୍ରହ୍ମାଣ୍ଡ ପୁରାଣର ଏହ ବର୍ଣ୍ଣନାକୁ ମହାଭାରତର ଆଦିପର୍ବର ନିମ୍ନଲିଖିତ ଶ୍ଳୋକ ସମର୍ଥନ କରୁଛି:—

ତତଃ ପ୍ରବାସିତୋ ବିଦ୍ୱାନ୍ ବିଦୁରେଣ ନରସ୍ତଦା ।
ପାର୍ଥାନାଂ ଦର୍ଶୟାମାସ ମନୋମାରୁତଗାମିନୀଂ ।
ସର୍ବବାତସହାଂ ନାବଂ ଯନ୍ତ୍ରଯୁକ୍ତାଂ ପତାକିନୀଂ ।
ଶିବେ ଭଗୀରଥୀ ତୀରେ ନରୈର୍ବିଶ୍ରମ୍ଭିଭିଃ କୃତାଂ ।

ତମ୍ଳୁକ ଏକ ବିଶାଳ ପୋତାଶ୍ରୟ ଥିଲା । ତହିଁରେ ସହସ୍ର ସହସ୍ର ଲୋକ ଆଶ୍ରୟ ନେଉଥିଲେ । ପ୍ରତି ପୋତରେ ସହସ୍ର ସହସ୍ର ଯାତ୍ରୀ ଗମନାଗମନ କରୁଥିଲେ । ପୋତମାନ ଯବ, ମଳୟ, ବାଲି, ସୁମାତ୍ରା, ବ୍ରହ୍ମ, ଗଙ୍ଗାସାଗର, ଚୀନ, ଶ୍ୟାମ, ସିଂହଳ ପ୍ରଭୃତି ଦେଶକୁ ଯିବା ଆସିବା କରୁଥିଲା । ପୋତଗୁଡ଼ିକୁ ଆବରଣ ଦେବା ପାଇଁ ତମ୍ବାପାତଆର ଛାଉଣୀ ରହୁଥିଲା । ପୋତର ନିମ୍ନଭାଗରେ

ଚକ୍ରବ୍ୟୂହ ବା କ୍ଷୁଦ୍ର ବୃହତ୍ ପରସ୍ପର ସଂଲଗ୍ନ ଅନେକ ଯନ୍ତ୍ରାକାର ଚକ୍ର ରହୁଥିଲ । ପୋତମଧ୍ୟର ବାଷ୍ପଯନ୍ତ୍ର ଦୀପନ, ଜ୍ୱଳନ ବା ବିସ୍ଫୋଟନଦ୍ୱାରା ସେହି ଚକ୍ରମାନଙ୍କୁ ଚଳାଉଥିଲା । ତଦ୍ୱାରା ଚଳୁଥିଲ ପୋତ । ବାୟୁର ଗତିଧାରଣ ନିମନ୍ତେ ପୋତରେ ଥିଲି ବାୟୁନାଳ, ଯାହା ସଙ୍କୁଚିତ ବା ପ୍ରସାରିତ ହୋଇ ପାରୁଥିଲ । ସଙ୍କୋଚନଦ୍ୱାରା ଜଳ ଭିତରେ ଏବଂ ପ୍ରସାରଣଦ୍ୱାରା ବାୟୁ ସାହାଯ୍ୟରେ ପୋତ ଗତି କରୁଥିଲି । ନୌକାଚାଳନ ସକାଶେ ବିଭିନ୍ନପ୍ରକାର ଯନ୍ତ୍ର ଥିଲ । ନାବଯନ୍ତ୍ରଦ୍ୱାରା ଗତି ଓ ଦିଗନିର୍ଣ୍ଣୟ, ମତ୍ସ୍ୟଯନ୍ତ୍ରଦ୍ୱାରା ନୌକାର ଗତିର ଦିଗନିର୍ଦ୍ଧାରଣ, ପକ୍ଷୀଯନ୍ତ୍ରଦ୍ୱାରା ପବନର ଦିଗନିରୂପଣ, କୂର୍ମଯନ୍ତ୍ରଦ୍ୱାରା ପଥ ନିରୂପଣ କରାଯାଇ ପାରୁଥିଲା ।

ବୋଇତମାନଙ୍କର ରୂପ ଓ ଆକାର ନାନାପ୍ରକାର ଥିଲି । ବିସ୍ତୃତକାୟ ପୋତକୁ କହା ଯାଉଥିଲା ଦୀର୍ଘା; ଉନ୍ନତକାୟ ପୋତକୁ କହା ଯାଉଥିଲା ଉନ୍ନତା । 'ସାମାନ୍ୟମନ୍ଥର' ନାମକ ବୋଇତର ଦୈର୍ଘ୍ୟ ୧୨୦ ହାତ, ପ୍ରସ୍ଥ ୬୦ ହାତ ଓ ଉଚ୍ଚତା ୬୦ ହାତ ଥିଲା * । ଜାହାଜ ଉପରିଭାଗରେ ଏକ କୁଟୀର ବା ମନ୍ଦିର ରହୁଥିଲା । କୌଣସି କୌଣସି ଜାହାଜରେ ଏହା ଗୋଟିଏ ଅଗ୍ରରେ ରହୁଥିଲି ଏବଂ କୌଣସି କୌଣସି ଜାହାଜରେ ଏହା ନିର୍ମିତ ହେଉଥିଲା ମଧ୍ୟସ୍ଥଳରେ । କୌଣସି କୌଣସି ଜାହାଜର ଅଗ୍ରରୁ ପଶ୍ଚାତ୍ ପର୍ଯ୍ୟନ୍ତ ସମଗ୍ରାଂଶରେ ସେହି କୁଟୀର ନିର୍ମିତ ହେଉଥିଲା । କୁଟୀରର ଅବସ୍ଥିତି ଅନୁସାରେ ଜାହାଜର ନାମ ହେଉଥିଲା

* ଯୁକ୍ତି କଳ୍ପତରୁ—ହସ୍ତଲିଖିତଗ୍ରନ୍ଥ—ଭୋଜ ନରପତି ।

'ଅଗ୍ରମନ୍ଦର', 'ମଧ୍ୟମନ୍ଦର' ବା 'ସର୍ବମନ୍ଦର' । କୌଣସି କୌଣସି ଜାହାଜରେ ଏପ୍ରକାର ତିନି ବା ପାଞ୍ଚ ମନ୍ଦର ବା ଶିଖର ରହୁଥିଲା । ସେହିପରି ଜାହାଜରେ ଏକ ବା ଏକାଧିକ ମାସ୍ତୁଲ ଖଞ୍ଜା ହୋଇଥିଲା । ବୋଇତମାନଙ୍କର ମଙ୍ଗମାନ ମଧ୍ୟ ସିଂହ, ବ୍ୟାଘ୍ର, ହସ୍ତୀ, ସର୍ପ, ହଂସ, ମୟୂର, ବେଙ୍ଗ ବା ମନୁଷ୍ୟର ମୁଣ୍ଡ ପରି * ସେହିପରି ଆକୃତିର ହେଉଥିଲା । ପୋତଗୁଡ଼ିକ ଦ୍ରୁତଗାମୀ ଥିଲା । କେତେକ ସମ୍ପୂର୍ଣ୍ଣ ରୂପେ ଜଳ ଭିତରେ ବୁଡ଼ି ଗତି କରୁଥିଲା । ସମସ୍ତେ ଦ୍ୱୀପ ଦ୍ୱୀପାନ୍ତରରୁ ପଣ୍ୟସମ୍ଭାର ଆଣୁଥିଲେ ।

ସମ୍ରାଟ୍ ଅଶୋକ ବୋଧିଦ୍ରୁମର ଏକ ଶାଖା ସିଂହଳରାଜ ତିସ୍ସଙ୍କ ନିକଟକୁ ପଠାଇଥିଲେ । ରାଜକୁମାରୀ ସଙ୍ଘମିତ୍ରା ତାହାଁର ବାହିକା ଥିଲେ । ସେ ତାମ୍ରଲିପ୍ତରୁ ବାହାରି ସାତ ଦିନରେ ସିଂହଳରେ ‡ ପହଞ୍ଚିଲେ । ଅର୍ଥାତ୍ କଳିଙ୍ଗପୋତମାନ ଦିନରେ ପ୍ରାୟ ଦୁଇ ଶହ ମାଇଲ ସମୁଦ୍ର ପଥରେ ଗତି କରୁଥିଲା ।

କଳିଙ୍ଗବାସୀ ଓଡ଼ିଆ ବୃହଦାକାର ପୋତରେ ବାଣିଜ୍ୟ କରୁଥିଲେ । ଚୀନ, ଶ୍ୟାମ, ବ୍ରହ୍ମ, ଗଙ୍ଗାସାଗର, ସୁବର୍ଣ୍ଣଦ୍ୱୀପ (ବୋର୍ଣ୍ଣିଓ, ଯବ, ସୁମାତ୍ରା, ବାଲି) ଓ ସିଂହଳ ବାଣିଜ୍ୟର ପ୍ରଧାନ କେନ୍ଦ୍ର ଥିଲା । ଏହି ଭୂଖଣ୍ଡରେ ସେମାନେ ପାରେସମୁଦ୍ର ସାମ୍ରାଜ୍ୟ ସ୍ଥାପନ କରିଥିଲେ । ସେଠାରେ ଉପନିବେଶ ସ୍ଥାପନ ପୂର୍ବକ ସେମାନେ ପ୍ରସାର ଓ ପ୍ରଚାର କରିଥିଲେ କଳିଙ୍ଗର ଧର୍ମ, ସଂସ୍କୃତି,

* ଯୁକ୍ତି କଳ୍ପତରୁ—ସଂସ୍କୃତ ଗ୍ରନ୍ଥ—ଭୋଜ ନରପତି ।

‡ History of Buddhism in Ceylon–W.A.D.Silva.

ସଭ୍ୟତା ତଥା ଶିଳ୍ପ । ମୂଳ ଅଧିବାସୀମାନଙ୍କୁ ଦେଇଥିଲେ ଜ୍ଞାନାଲୋକ । ଏହି ପାରେସମୁଦ୍ର ସାମ୍ରାଜ୍ୟର ନାମ ହୋଇଥିଲା 'ବୃହତ୍ତ କଳିଙ୍ଗ' । ଏପର୍ଯ୍ୟନ୍ତ ତହିଁର କେତେକ ଅଧିବାସୀ ନିଜକୁ 'କଳିଙ୍ଗ' ଜାତି ନାମରେ ପରିଚିତ କରାଉଛନ୍ତି । ସ୍ଥାନୀୟ ମୂଳ ଅଧିବାସୀଗଣ ବିଜେତା କଳିଙ୍ଗଜାତି ସଙ୍ଗେ ମିଶିଯାଇ ଗୋଟିଏ 'କଳିଙ୍ଗଜାତି'ରେ ପରିଣତ ହୋଇଥିଲେ ।

ଐତରେୟ ଆରଣ୍ୟକର ବର୍ଣ୍ଣନା ଅନୁସାରେ ଆଧୁନିକ ପଶ୍ଚିମବଙ୍ଗ (ଭାରତୀୟ) ଓ ପୂର୍ବବଙ୍ଗ (ପାକିସ୍ଥାନୀୟ) ଚାରି ଅଂଶରେ ବିଭକ୍ତ ଥିଲା: ବରେନ୍ଦ୍ର, ବଙ୍ଗ, ବାଘଡ଼ୀ ଓ ରାଢ଼ । ଧର୍ମପାଳଙ୍କ ଅଷ୍ଟମ ଶତାବ୍ଦୀର ଖଲିମପୁର ଶାସନରେ ବାଘଡ଼ୀର ଉଲ୍ଲେଖ ଦେଖାଯାଏ । ସେହି ଶାସନରେ ଧର୍ମପାଳ ନୌଖଶୁଭୁ ଗ୍ରାମ ଦାନ କରିଛନ୍ତି । ନୌଖଶୁଭୁ ପୌଣ୍ଡ୍ରବର୍ଦ୍ଧନ ଭୁକ୍ତି ଅନ୍ତଃପାତୀ ବ୍ୟାଘ୍ରତଟୀ ମଣ୍ଡଳର ମହନ୍ତା ପ୍ରକାଶ ବିଷୟରେ ଅବସ୍ଥିତ ଥିଲା । ଉତ୍ତର ବଙ୍ଗର ନାମ ଥିଲା ବରେନ୍ଦ୍ର । କେବଳ ମଧ୍ୟବଙ୍ଗଳକୁ କହା ଯାଉଥିଲା 'ବଙ୍ଗ' ନାମରେ । ଉପକୂଳ ବଙ୍ଗଳରେ ଥିଲା ବ୍ୟାଘ୍ରତଟୀ (ପୂର୍ବ ଉପକୂଳ) ଓ ରାଢ଼ (ପଶ୍ଚିମ ଉପକୂଳ) । "ନୀଳକଣ୍ଠ" ରାଢ଼ ବା ଲାଢ଼କୁ 'ସୁହ୍ମ' (ହୁଗୁଳୀ ନଦୀର ମୁହାଣ ସନ୍ନିକଟ ଉଭୟ ତଟ ଅଞ୍ଚଳ) ସଙ୍ଗେ ସମାନ ପ୍ରକାରେ ବର୍ଣ୍ଣନା କରିଛନ୍ତି । ଏହି ସୁହ୍ମର ସନ୍ନିହିତ ଥିଲା ଓଡ୍ର ବା ଉତ୍କଳ (ଆଧୁନିକ ମେଦିନୀପୁର, ବାଙ୍କୁଡ଼ା, ମାନଭୂମ ଓ ସିଂହଭୂମ), ଯହିଁରେ ଇତିହାସପ୍ରସିଦ୍ଧ ତାମ୍ରଲିପ୍ତ ବନ୍ଦର ଅବସ୍ଥିତ ଥିଲା । କପିଶା ନଦୀ ପର୍ଯ୍ୟନ୍ତ ଉତ୍କଳର ଦକ୍ଷିଣସୀମା ଥିଲା । କପିଶାର ଅପର କୂଳରୁ କଳିଙ୍ଗ ବିସ୍ତୃତ ଥିଲା (ଭାଷ୍ୟପର୍ବ,

ନବମ ଅଧ୍ୟାୟ, ୩୬୮ ଶ୍ଳୋକ; ଦ୍ରୋଣପର୍ବ, ଚତୁର୍ଥ ଅଧ୍ୟାୟ, ୧୨୨ ଶ୍ଳୋକ; କର୍ଣ୍ଣପର୍ବ ବାଇଶ ଅଧ୍ୟାୟ, ୮୮୨ ଶ୍ଳୋକ ଏବଂ କାଳିଦାସଙ୍କ ରଘୁବଂଶ ଚତୁର୍ଥ ସର୍ଗ * ।

ବଙ୍ଗୋପସାଗରର ନାମ ପୂର୍ବାମ୍ବୁଧି, ଆରବସାଗରର ନାମ ପଶ୍ଚିମପୟୋଧି ଏବଂ ଭାରତ ସାଗରର ନାମ ଦକ୍ଷିଣ ଜଳନିଧି ଥିଲା । "ବଙ୍ଗ" ଏକ ଅନ୍ତର୍ବର୍ତ୍ତୀ କ୍ଷୁଦ୍ର ଅଞ୍ଚଳ ଥିବାରୁ ପୂର୍ବାମ୍ବୁଧିର ନାମ ଇଂରାଜମାନଙ୍କ ଆଗମନ ପରେ 'ବଙ୍ଗୋପସାଗର' ହୋଇଅଛି । ବୋଇତବାଣିଜ୍ୟରେ ପରାକ୍ରାନ୍ତ କଳିଙ୍ଗ ଜାତି ପୂର୍ବାମ୍ବୁଧିକୁ "କଳିଙ୍ଗସାଗର" ନାମ ଦେଇଥିଲେ । କଳିଙ୍ଗସାଗରର ଚତୁର୍ଦ୍ଦିଗରେ "କଳିଙ୍ଗସାମ୍ରାଜ୍ୟ" ବେଷ୍ଟି ରହିଥିଲା । କଳିଙ୍ଗମାନେ ସମତଟ (ଚଟ୍ଟଗ୍ରାମ), ବ୍ୟାଘ୍ରତଟ (ହୁଗୁଳୀ ଓ ପଦ୍ମା ମଧ୍ୟବର୍ତ୍ତୀ ଅଞ୍ଚଳ), ତାମ୍ରଲିପ୍ତ ଓ ଉତ୍କଳରେ ବସତି ସ୍ଥାପନ କରିଥିଲେ । ସେମାନଙ୍କର ବସତି ଓ ସଂସ୍କୃତି ପ୍ରସାରିତ ହୋଇଥିଲା କାମାଖ୍ୟା ଓ କାମରୂପ ପର୍ଯ୍ୟନ୍ତ । ଏଥିର ପରିଣାମରେ ଓଡ଼ିଆ, ବଙ୍ଗଳା ଓ ଆସାମୀୟ ଭାଷାର ରୂପସାମ୍ୟ ଓ ମିଶ୍ରଣ ଘଟିଥିଲା ।

ଗଙ୍ଗା (ପଦ୍ମା) ଓ ଭାଗୀରଥୀର ମୁହାଣକୁ ଗଙ୍ଗାସାଗର କହାଯାଉଥିଲା । କଳିଙ୍ଗର ବାଣିଜ୍ୟ ପୋତ ଗଙ୍ଗାସାଗର ଅଞ୍ଚଳରେ ବସ୍ତ୍ରର ବାଣିଜ୍ୟ କରୁଥିଲା । କ୍ଷୁଦ୍ରତର ନୌକା ସାହାଯ୍ୟରେ ଗଙ୍ଗା-ସାଗରରୁ ଆନ୍ତର୍ଦ୍ଦେଶୀୟ ବାଣିଜ୍ୟ ଚାଲୁଥିଲା । ଏହି ବାଣିଜ୍ୟ ନିୟନ୍ତ୍ରଣ ନିମନ୍ତେ ମୌର୍ଯ୍ୟମାନେ ଓ ଗୁପ୍ତମାନେ ବିପୁଳ ପ୍ରୟାସ ସ୍ୱୀକାର

* ଶ୍ଳୋକର ସଂଖ୍ୟା ସମଗ୍ର ପର୍ବର ଶ୍ଳୋକ ସଂଖ୍ୟା ରୂପେ ଗଣନ୍ତୁ ।

ଓ ବିଧିବ୍ୟବସ୍ଥା ପ୍ରଣୟନ କରିଥିଲେ । ସେଥି ସକାଶେ ସେମାନେ ଏକ ବାଣିଜ୍ୟସମିତି ରଖିଥିଲେ ।

ପାରେସମୁଦ୍ର ସାମ୍ରାଜ୍ୟ କଥା ଛାଡ଼ିଦେଲେ, କଳିଙ୍ଗ ଏକ ବିଶାଳ ଦେଶ ଥିଲା । ଏହା ତିନି ଭାଗରେ ବିଭକ୍ତ ଥିଲା:-କଳିଙ୍ଗ (ପ୍ରାଚୀ), ମଣ୍ଡଳ (ମଧ୍ୟ) କଳିଙ୍ଗ ବା ଗଙ୍ଗାରିଡ଼ି କଳିଙ୍ଗ ଏବଂ ମଗ (ମକ୍‌କ) କଳିଙ୍ଗ * । ପ୍ରାଚୀ କଳିଙ୍ଗ (କଳିଙ୍ଗସାଗର ସନ୍ନିହିତ ଭାରତର ପୂର୍ବପ୍ରାନ୍ତ) ମହେନ୍ଦ୍ରଗିରି ଅଥବା ଗୋଦାବରୀଠାରୁ ସୁବର୍ଣ୍ଣରେଖା ନଦୀ ପର୍ଯ୍ୟନ୍ତ ବ୍ୟାପିଥିଲା । ମଧ୍ୟ କଳିଙ୍ଗ ବା ଗଙ୍ଗା-ରିଡ଼ି କଳିଙ୍ଗ ସୁବର୍ଣ୍ଣରେଖାଠାରୁ ପଦ୍ମାନଦୀ ପର୍ଯ୍ୟନ୍ତ ବ୍ୟାପିଥିଲା । ଏହାର ଉତ୍ତରକୁ ମଲ୍ଲାଇ ଓ ମୁଣ୍ଡାଇମାନଙ୍କର ଦେଶ ଥିଲା । ମେଦିନୀପୁର, ମୟୂରଭଞ୍ଜ, ସିଂହଭୂମ ମାନଭୂମ, ବାଙ୍କୁଡ଼ା, ଚବିଶ ପ୍ରଗଣା, ବ୍ୟାଘ୍ରତଟ (ସୁନ୍ଦରବଣ) ଏହାଁର ଅନ୍ତର୍ଗତ ଥିଲା । ଅର୍ଥାତ୍ ଆଧୁନିକ ସାନ୍ତାଳପ୍ରଗଣାକୁ ମଧ୍ୟକଳିଙ୍ଗର ଉତ୍ତର ସୀମା ‡ ଲାଗିଥିଲା । ମଗକଳିଙ୍ଗ ପଦ୍ମାଠାରୁ ଈରାବତୀର ମୁହାଣ ଅଞ୍ଚଳ ସଙ୍ଗେ ମାଳୟର ଶେଷ ସୀମା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସୁବର୍ଣ୍ଣଭୂମି ବା ପୂର୍ବଭାରତୀୟ

* ମକ୍‌କ ବା ମଗ ଥିଲା ଆରାକାନର ନାମ । ଆରାକାନବାସୀଙ୍କ ସାମୁଦ୍ରିକ ନାମ "ମଗ" । (Indian Shipping—R. K. Mookerjee—P. 210)

‡ Geography of Ancient India—Ptolemy, Gangaridae Calingae,—Megasthenes and Arrian, p. 136.

ଦ୍ୱୀପପୁଞ୍ଜ ତଦ୍ଦେଶର ଅନ୍ତର୍ଭୁକ୍ତ ଥିଲ, ଅର୍ଥାତ୍ ଏହା ସମତଟ (ଚଟ୍ଟଗ୍ରାମ), ଦକ୍ଷିଣ ବ୍ରହ୍ମଦେଶ, ଇଣ୍ଡୋଚୀନ, ଶ୍ୟାମ, ମଳୟ, ଯବ, ସୁମାତ୍ରା, ବାଲି, ବୋର୍ଣ୍ଣିଓ ପ୍ରଭୃତି ଅଞ୍ଚଳ ନେଇ * ଗଠିତ ହୋଇଥିଲା ।

ମେଗାସ୍ଥିନିସଙ୍କ ବର୍ଣ୍ଣନା କ୍ରମେ ପ୍ରାଚୀ କଳିଙ୍ଗ ଓ ଗଙ୍ଗା-ରାଇଡ଼ କଳିଙ୍ଗ ମଗଧର ଦକ୍ଷିଣକୁ ଥିଲା ଏବଂ କଳିଙ୍ଗର ରାଜଧାନୀ ଥିଲା ପର୍ଥଲି । ଟଲେମିଙ୍କ ମତରେ ତୋଷାଲି କଳିଙ୍ଗର ରାଜଧାନୀ ଥିଲା । ପର୍ଥଲି ହୋଇପାରେ ଗଞ୍ଜାମ ଜିଲ୍ଲାର ପଲ୍ଲୁର, ପରଲି ବା ପାଲଆ । କିନ୍ତୁ ଟଲେମି ଯେତେବେଳେ ନିର୍ଦ୍ଦିଷ୍ଟ ରୂପେ ତାକୁ ତୋଷାଲି ବୋଲି କହୁଛନ୍ତି, ପର୍ଥଲି ଏହି ତୋଷାଳିର ଅନ୍ୟ ନାମ ବୋଲି ଅନୁମାନ କରାଯାଏ । ଏକାମ୍ର ପ୍ରସ୍ଥ ଭୁବନେଶ୍ୱରର ଅନ୍ୟ ନାମ "ଏକ ପ୍ରସ୍ତର" ବା "ପ୍ରସ୍ତର" । ଭୁବନେଶ୍ୱର ମାଙ୍କଡ଼ାପଥରର ଖଣି । ସେଥିଲାଗି ଏହାର ନାମ ଏକପ୍ରସ୍ତର ବା "ପ୍ରସ୍ତର" ଥିଲ । ପ୍ରାକୃତରେ ପ୍ରସ୍ତରର ଉଚ୍ଚାରଣ ପଥ୍ଥର । ର ଓ ଲ ଅଭେଦ ଥିବାରୁ ଏବଂ ପାଲିରେ ର 'ଲ'ର ରୂପ ନେଉଥିବାରୁ ଗ୍ରୀକ୍‌ଲେଖକ ମେଗାସ୍ଥିନିସ ଏହାକୁ "ପରଥଲି" ବୋଲି କହିଛନ୍ତି ।

ମେଗାସ୍ଥିନିସଙ୍କ ବର୍ଣ୍ଣନାନୁସାରେ କଳିଙ୍ଗ ଉପକୂଳର ଦୈର୍ଘ୍ୟ ସାତ ଶହ ମାଇଲ ଥିଲ । ଏହି ଦୈର୍ଘ୍ୟ ପ୍ରାଚୀ କଳିଙ୍ଗ ଓ ଗଙ୍ଗାରାଇଡ଼ କଳିଙ୍ଗର ପୂର୍ବୋକ୍ତ ସୀମା ସଙ୍ଗେ ସମବସ୍ତାର ‡ ।

* Pliny—First Century A. D.

‡ Ancient India as described by Megasthenes and Arrian—M'Crindle.

ବହୁକୀର୍ତ୍ତିତ ତ୍ରିକଳିଙ୍ଗ ଏହି ପ୍ରାଚୀକଳିଙ୍ଗ, ମଧ୍ୟ କଳିଙ୍ଗ ଓ ମହାକଳିଙ୍ଗ । ଯେତେବେଳେ କଳିଙ୍ଗମାନେ ଔପନିବେଶିକ ସାମ୍ରାଜ୍ୟ ବଢ଼ାଇଲେ, କଳିଙ୍ଗ ସମ୍ରାଟ୍ ସମସ୍ତ 'ତ୍ରିକଳିଙ୍ଗାଧିପତି' ଉପାଧି ବ୍ୟବହାର କରି ନ ଥିଲେ ।

ପୁରାଣମାନଙ୍କରୁ ଜଣାଯାଏ, ଦୀର୍ଘତମା ଋଷିଙ୍କ ଔରସରେ ବଳି ରାଜାଙ୍କ ସ୍ତ୍ରୀ ସୁଦେଷ୍ଣା ପାଞ୍ଚ ନିୟୋଗ ପୁତ୍ର ଲାଭ କରିଥିଲେ । ସେମାନଙ୍କ ନାମ ଅଙ୍ଗ, ବଙ୍ଗ, ପୁଣ୍ଡ୍ର, ସୁହ୍ମ ଓ କଳିଙ୍ଗ । ନିଜ ନିଜ ନାମ କ୍ରମେ ସେମାନେ ପାଞ୍ଚ ରାଜ୍ୟ ସ୍ଥାପନ କରିଥିଲେ । ଏଥିରୁ ସ୍ପଷ୍ଟ ଜଣାପଡ଼ୁଛି ଯେ ଏହି ପାଞ୍ଚ ରାଜ୍ୟ ଅଙ୍ଗ, ବଙ୍ଗ, ପୁଣ୍ଡ୍ର, ସୁହ୍ମ ଓ କଳିଙ୍ଗର ଅଧିବାସୀମାନେ ଏକ ଜାତି ଥିଲେ । ଏମାନେ ପାଞ୍ଚଗୋଟି ମ୍ଳେଚ୍ଛ ରାଜ୍ୟ ସ୍ଥାପନ କରିଥିଲେ ।

(ଅଙ୍ଗବଙ୍ଗକଳିଙ୍ଗେଷୁ ସୌରାଷ୍ଟ୍ରମଗଧେଷୁ ଚ ।
ତୀର୍ଥଯାତ୍ରାଂ ବିନା ଯାତଃ ପୁନଃ ସଂସ୍କାରମର୍ହତି ।)

ପାର୍ଗିଟାର କହନ୍ତି ଯେ ଆର୍ଯ୍ୟମାନେ ସମୁଦ୍ର ପଥରେ ଆସି ଅଙ୍ଗ, ବଙ୍ଗ, ପୁଣ୍ଡ୍ର, ସୁହ୍ମ ଓ କଳିଙ୍ଗରେ ବସତି ସ୍ଥାପନ କରିଥିଲେ । ଏଥିରୁ ସିଦ୍ଧାନ୍ତ ହେବ ଯେ ଶାଶ୍ୱତ ବଂଶ ବଦର୍ଭରୁ କଳିଙ୍ଗକୁ ଏବଂ କଳିଙ୍ଗରୁ ଜଳପଥରେ ପୁଣ୍ଡ୍ର, ସୁହ୍ମ, ବଙ୍ଗ ଓ ଅଙ୍ଗକୁ ଉତ୍ତରର ହୋଇଥିଲେ ।

ଗ୍ରୀକ୍‌ମାନଙ୍କ ବିବରଣୀରୁ ଜଣାଯାଏ ଯେ ପ୍ରାଚୀ (ପ୍ରାସୀ)ର ପୂର୍ବକୁ ଥିଲା ଗଙ୍ଗାରିଡ଼ି କଳିଙ୍ଗ । ଗଙ୍ଗାନଦୀ ଉଭୟର ସୀମା ଥିଲା । ଟଲେମି କହନ୍ତି, ଗଙ୍ଗାର ଥିଲା ପାଞ୍ଚ ଶାଖା: କମ୍ବିସନ (ଗଙ୍ଗାରିଡ଼ି

କଳାଙ୍ଗର ପଶ୍ଚିମ ସୀମାନ୍ତ ଶାଖାନଦୀ), ମେଗା, କମ୍ବେରିକନ, ସ୍ୟୁଦୋସ୍ତୋମନ ଓ ଅନ୍ତବୋଲ (ଗଙ୍ଗାରିଇଡ଼ କଳିଙ୍ଗର ପୂର୍ବ ସୀମାନ୍ତ ଶାଖାନଦୀ) * । ସୁତରାଂ, ଗଙ୍ଗାରିଇଡ଼ କଳିଙ୍ଗ ଭାଗୀରଥୀ ଓ ବ୍ରହ୍ମପୁତ୍ର-ପଦ୍ମାର ମଧ୍ୟରେ ସୀମାବଦ୍ଧ ଥିଲା । ମେଗାସ୍ଥିନିସଙ୍କ ବର୍ଣ୍ଣିତ ଗଙ୍ଗାରିଇଡ଼ କଳିଙ୍ଗ ଭାଗୀରଥୀ (ହୁଗୁଳୀ) ଏବଂ ବ୍ରହ୍ମପୁତ୍ର-ପଦ୍ମା-ନଦୀ-ସୀମିତ ଏହି ଅଞ୍ଚଳ ଅଟେ । ମେକ୍ରିଣ୍ଡଲଙ୍କ ବର୍ଣ୍ଣନା ଅନୁସାରେ ଗଙ୍ଗାରିଇଡ଼ କଳିଙ୍ଗମାନେ କଳିଙ୍ଗମାନଙ୍କର ଏକ ଶାଖା ଥିଲେ । ପ୍ଲିନି କହୁଛନ୍ତି ଯେ କଳିଙ୍ଗର ରାଜଧାନୀ ଥିଲା ପାର୍ଥାଲି । ପାର୍ଥାଲି ସମ୍ବନ୍ଧରେ ପୂର୍ବେ ଆଲୋଚନା କରାଯାଇ ଅଛି ।

Periplus of the Erythrean Sea ର ବର୍ଣ୍ଣନାରୁ ତଥା Pliny ଙ୍କ ବର୍ଣ୍ଣନାରୁ ଜଣାପଡ଼େ ଯେ ଗଙ୍ଗାମୁହାଣରେ ଗଙ୍ଗା ନାମକ ଏକ ନଗରବନ୍ଦର ଥିଲା । Periplus ର ବର୍ଣ୍ଣନାନୁସାରେ ସେଠାରେ ହେଉଥିଲା ବସ୍ତ୍ରର ବାଣିଜ୍ୟ ବନିମୟ । ଟଲେମି ଗଙ୍ଗା ଓ ତାମ୍ରଲିପ୍ତି ଉଭୟ ବନ୍ଦରର ଉଲ୍ଲେଖ କରିଛନ୍ତି । ଗଙ୍ଗାବନ୍ଦର ସମ୍ଭବତଃ ପଦ୍ମା ମୁହାଣରେ ଥିଲା ।

ଖ୍ରୀଷ୍ଟ ୯୮ ରେ ରାଜରାଜ ଚୋଳ କଳିଙ୍ଗ ସିଂହାସନରେ ରାଜା ହୋଇଥିଲେ । ସେ ଚେର ନୌବାହିନୀ ଧ୍ୱଂସ କରିଥିଲେ ଏବଂ ୨୭ ବର୍ଷ ରାଜତ୍ୱକାଳ ମଧ୍ୟରେ କଳିଙ୍ଗର ସୀମା ଦକ୍ଷିଣରେ

* କମ୍ବିସନ=ଭାଗୀରଥୀ । ଅନ୍ତବୋଲ=ପଦ୍ମା ବା ବ୍ରହ୍ମପୁତ୍ର । କମ୍ବେରିକନ=କୌମାରକ=କୋବ୍‌ବାରକ=ବଡ଼ଗଙ୍ଗା । ସ୍ୟୁଦୋ (ଛୁଦ୍ର ବା ଛଦ୍ମ) ସ୍ତୋମନ (ଯମୁନା) । ମେଗା=ମେଘନା ।

ଇଲମ୍ (ସିଂହଳ) ପର୍ଯ୍ୟନ୍ତ ଏବଂ ପଶ୍ଚିମରେ ମହୀସୁର ପର୍ଯ୍ୟନ୍ତ ବଢ଼ାଇଥିଲେ । ତାଙ୍କ ନୌବାହିନୀ ଦୁର୍ଦ୍ଦାନ୍ତ ଓ ଦୁର୍ଜ୍ଜେୟ ଥିଲା । ତାଙ୍କ ପୁତ୍ର ପ୍ରଥମ ରାଜେନ୍ଦ୍ର ଚୋଳ (୧୦୧୮-୪୪) ରାଜତ୍ୱର ଦ୍ୱାଦଶ ବର୍ଷରେ ଏକ ଅନୁଶାସନରେ ନିଜକୁ ଓଡ଼ିଶା, ବଙ୍ଗଳ, ବିହାର ଓ ଗୁର୍ଜ୍ଜରର ଅଧୀଶ୍ୱର ବୋଲି ବର୍ଣ୍ଣନା କରିଛନ୍ତି । ସେ ତ୍ରୟୋଦଶ ବର୍ଷର ଅନ୍ୟ ଏକ ଅନୁଶାସନରେ ନିଜକୁ "ସମୁଦ୍ରାନୁବର୍ତ୍ତୀ ଦ୍ୱାଦଶ ସହସ୍ର ଦ୍ୱୀପର ଅଧୀଶ୍ୱର" ଏବଂ "କଦରମ୍ ( ପେଗୁ )-ରାଜ ସଙ୍ଗ୍ରାମ ବିଜୟୋତ୍ତୁଙ୍ଗ ବର୍ମାଙ୍କ ବିଜେତା" ବୋଲି ବର୍ଣ୍ଣନା କରିଛନ୍ତି । ତାଙ୍କ ହସ୍ତୀସେନା ଅସଂଖ୍ୟ ଅର୍ଣ୍ଣବପୋତରେ ପେଗୁକୁ ଯାଇ ବିଜୟୋତ୍ତୁଙ୍ଗ ବର୍ମାଙ୍କୁ ପରାସ୍ତ କରିଥିଲେ ଏବଂ ତକ୍କୋଲମ୍, ମାତ୍ରମା (ମାର୍ତ୍ତାବାନ୍), ଶ୍ରୀ ବିଷୟ ଓ ନକ୍କୋବରମ୍ (ଆଣ୍ଡାମାନ ଓ ନିକୋବର) * ଜୟ କରିଥିଲେ ।

ଯେଉଁ ପୋତମାନଙ୍କରେ ଗଙ୍ଗାବନ୍ଦର କଳିଙ୍ଗରେ ବାଣିଜ୍ୟ ଚାଲୁଥିଲା, ସେମାନଙ୍କୁ ବ୍ରହ୍ମାଣ୍ଡପୁରାଣ 'ଗଙ୍ଗାସାଗର' (ସୁନ୍ଦରବଣ=ରାଢ, ବ୍ୟାଘ୍ରତଟ, ସମତଟ)-ଗାମୀ ସୁପୋତ ବୋଲି

* Tamil Poem Kalinga Huparani, Canto VIII, Stanza 25.
Indian Antiquary, Vol. XXI, P. 383.
A History of Indian Shipping and Maritime Activity—Radhakumud Mookerji.
PP. 174-177.

ବର୍ଣ୍ଣନା କରନ୍ତି । ମହାଭାରତରୁ ମଧ୍ୟ ଏହି ଉକ୍ତିର ସାରବତ୍ତା ଜଣାଯାଏ ।

ପାରେସମୁଦ୍ର ବାଣିଜ୍ୟ ଚାଲିଥିଲା ତାମ୍ରଯୁଗରୁ ବା ସୈନ୍ଧବ-ସଭ୍ୟତା ଯୁଗରୁ, ଯହିଁର ପ୍ରମାଣ ଇତିପୂର୍ବେ ଋକ୍‌ବେଦରୁ ଉଲ୍ଲେଖ କରି ଯାଇଅଛି । ପୂର୍ବାମ୍ବୁଧିର ଏହି ପାରେସମୁଦ୍ର ବାଣିଜ୍ୟର ପ୍ରଧାନ ଅଂଶ କାଳିଙ୍ଗମାନଙ୍କ ହସ୍ତରେ ରହିଥିଲା । ପୂର୍ବାମ୍ବୁଧିର ନାମ ଥିଲା 'କଳିଙ୍ଗୋଦ୍ର' ବା 'କଳିଙ୍ଗସାଗର' * । କଳିଙ୍ଗୋଦ୍ର ଅନ୍ତର୍ବର୍ତ୍ତୀ (ମ୍ଲେଚ୍ଛ-ଅଧ୍ୟୁଷିତ) ଦ୍ୱୀପମାନଙ୍କରେ ହିନ୍ଦୁରାଜାମାନେ ଶାସନ କରୁଥିଲେ ।

ଖ୍ରୀଷ୍ଟପୂର୍ବ ସପ୍ତମ ଶତକରେ ବ୍ରହ୍ମଦେଶର ନାମ ଥିଲା କଳିଙ୍ଗରାଠ ( କଳିଙ୍ଗରାଷ୍ଟ୍ର ) ‡ । ସମୁଦ୍ରତୀରରୁ ଅଦୂରବର୍ତ୍ତୀ 'ଥାଟନ'ର ପ୍ରାଚୀନ ନାମ 'ସୁନ୍ନଣଟଦେଶ' (ବ୍ରାହ୍ମଣଦେଶ) । ନିମ୍ନ ବ୍ରହ୍ମଦେଶର ଅଧିବାସୀମାନେ ନିଜକୁ 'ତଲୈଙ୍ଗ' ( ତ୍ରିକଳିଙ୍ଗ )

* ଶ୍ରୀପର୍ବତେ ତଦା ଦେଶେ କାଶ୍ମୀରେ ଚ ଜୟନ୍ତୀ ତତ୍ପରେ ।
ଦ୍ୱୀପେଷ୍ୱେବ ଚ ସର୍ବେଷୁ କଳିଙ୍ଗୋଦ୍ରେଷୁ କୀର୍ତ୍ତ୍ୟତେ ।
ନୈର୍ଗୁଣ୍ୟାଂ ମ୍ଲେଚ୍ଛଦେଶେଷୁ କୋଶଳେଷୁ ସମନ୍ତତଃ ।
ଅମ୍ବୁଧେଃ କୃଷ୍ଣତୀରନ୍ତାଃ ନୃପାଃ ଖ୍ୟାତା ଅନନ୍ତକାଃ ।
("ଆର୍ଯ୍ୟମଞ୍ଜୁଶ୍ରୀମୂଳକଳ୍ପ"—ଶ୍ଳୋକ ୬୩୭-୬୩୮)

'ଆର୍ଯ୍ୟମଞ୍ଜୁଶ୍ରୀମୂଳକଳ୍ପ' ମହାଯାନୀ ବୌଦ୍ଧମାନଙ୍କର ଧର୍ମଗ୍ରନ୍ଥ । ଗ୍ରନ୍ଥଲେଖକଙ୍କ ପାଳବଂଶ ଜଣା ନ ଥିବାରୁ ଶ୍ରୀ କାଶୀପ୍ରସାଦ ଜୟସ୍ୱାଲ କହନ୍ତି, ଏହି ଗ୍ରନ୍ଥଟି ୭୭୦ ଖ୍ରୀଷ୍ଟାବ୍ଦର ପୂର୍ବ-କାଳର ରଚନା ବୋଲି ।

‡ Ptolemy's Ancient Geography—Zerini.

ବୋଲି କହନ୍ତି । ସେମାନେ ନିକଳିଙ୍ଗର ଅଧିବାସୀ ଥିଲେ । ପ୍ରୋମ୍‌ର ପ୍ରାଚୀନ ନାମ 'ଶ୍ରୀକ୍ଷେତ୍ର' * । ଚୀନ ପରିବ୍ରାଜକ ଏହି ଶ୍ରୀକ୍ଷେତ୍ରକୁ ବର୍ଣ୍ଣନା କରିଛନ୍ତି 'ଶିଲିଚେଚାଲୋ' ନାମରେ । ପେଗୁର ପ୍ରାଚୀନ ନାମ ଉତ୍କଳ (ଉତ୍କଳ=ଉଇକ୍ଷଳ=ଓଡ୍ରଦେଶ) । ମାଳୟର ମୂଳ ଅଧିବାସୀମାନେ ନିଜକୁ 'କ୍ଲିଙ୍ଗ', 'କଲିଙ୍ଗ' ବା 'କେଲିଙ୍ଗ' ବୋଲି କହନ୍ତି ‡ । ବ୍ରହ୍ମଦେଶର ଉତ୍ତରପଶ୍ଚିମ ସାଗର ନାମ ଥିଲା ଉକ୍‌ଳକ (ଉତ୍କଳ ?) । ଜେରିନି କହନ୍ତି ଯେ ଖ୍ରୀଷ୍ଟପୂର୍ବ ୨୪୪ରେ କଳିଙ୍ଗମାନେ ପୂର୍ବଭାରତୀୟ ଦ୍ୱୀପପୁଞ୍ଜରେ ଏକ କ୍ଷୁଦ୍ର ସାମ୍ରାଜ୍ୟ § ସ୍ଥାପନ କରିଥିଲେ ।

ପୂର୍ବୋକ୍ତ ବିବରଣମାନଙ୍କରୁ ସ୍ପଷ୍ଟ ହେବ ଯେ "ଅଶୋକ ମୌର୍ଯ୍ୟଙ୍କ କଳିଙ୍ଗବିଜୟର ପୂର୍ବେ ସ୍ଥାପିତ ହୋଇଥିଲା ବ୍ରହ୍ମଦେଶରେ

* "× × × ଅମାନୁଷିକ ଶକ୍ତିଶାଳୀ ମହାଯଶା ପଞ୍ଚଭୂତାଧିପତି ବିଷ୍ଣୁନାମକ ଜଣେ ଋଷି, × × × ଗଣପତି, ସ୍ୱର୍ଗର ଇନ୍ଦ୍ର, ବିଶ୍ୱକର୍ମା ଦେବପୁତ୍ର, ଓ କୃତବର୍ମା ନାଗରାଜ ନିର୍ମାଣ କରିବେ ଏକ ନଗରୀ ଯାହାର ନାମ ହେବ 'ସମିଦ୍ଧ ଶ୍ରୀକ୍ଷେତ୍ର' ।

(ଶ୍ୱେଜ ଗାଁ ମନ୍ଦିର ଶିଳାଲେଖ)

—ସଂସ୍କୃତ ଶିଳାଲିପିର ଓଡ଼ିଆ ଅନୁବାଦ । ଖ୍ରୀଷ୍ଟ ସପ୍ତମ ଅଷ୍ଟମ ଶତକରେ ହ୍ୱାଂ ତ୍ସାଂ ଏହି 'ଶିଲିଚେଚାଲ'ର ଏବଂ ଶ୍ୱେଜ ଗାଁ ମନ୍ଦିରର ଉଲ୍ଲେଖ କରିଛନ୍ତି ।

‡ Brahmanical Gods of Burma, PP. 84-85—Nihar Ranjan Ray.

§ Zerini—PP. 119-39,

କଳିଙ୍ଗ ସାମ୍ରାଜ୍ୟ" * । "(କଳିଙ୍ଗ) ହିନ୍ଦୁମାନେ ଖ୍ରୀଷ୍ଟପୂର୍ବ ୬୪୪ରେ ବ୍ରହ୍ମଦେଶରେ ରାଜ୍ୟସ୍ଥାପନ କରିଥିଲେ" ¶ । ଓଡ଼ିଶାର ଶିଳ୍ପ ସଙ୍ଗେ ଶ୍ରୀକ୍ଷେତ୍ର ଶିଳ୍ପର ବିଲକ୍ଷଣ ସୌସାଦୃଶ୍ୟ ଅଛି । ବିଷ୍ଣୁ ଓ ଶିବପାର୍ବତୀଙ୍କ ମୂର୍ତ୍ତି ଦେଖିଲେ, କେହି ହେଲେ କହିବ ଯେ ଓଡ଼ିଶାରୁ ସେଗୁଡ଼ିକ ନିଆ ହୋଇଅଛି ।

ବ୍ୟାଘ୍ରତଟ-ସମତଟରୁ କଳିଙ୍ଗମାନେ କ୍ରମେ ବ୍ରହ୍ମଦେଶକୁ ଅଗ୍ରସର ହୋଇଥିଲେ । ବ୍ରହ୍ମଦେଶରୁ ଅଗ୍ରସର ହେଲେ ସୁବର୍ଣ୍ଣ-ଦ୍ୱୀପକୁ (ଯବ, ସୁମାତ୍ରା, ବାଲି, ବୋର୍ଣ୍ଣିଓକୁ) । ସୁବର୍ଣ୍ଣଦ୍ୱୀପରୁ କ୍ରମେ ଅଗ୍ରସର ହେଲେ ଚମ୍ପା, କମ୍ବୋଡ଼ିଆ, ଶ୍ୟାମ ଓ କୋଚିନଚୀନକୁ । ବୋର୍ଣ୍ଣିଓର ଏକ ଶିଳାଲିପିରେ ଅଶ୍ୱବର୍ମାଙ୍କ ପୁତ୍ର ମୂଳବର୍ମା ନିଜ ବହୁସୁବର୍ଣ୍ଣକ ଯଜ୍ଞର କଥା ଖୋଦନ କରାଇଛନ୍ତି । ଷଷ୍ଠ ଶତକର ପଶ୍ଚିମ ଯବର ରାଜା ପୂର୍ଣ୍ଣବର୍ମା ଏକ ଶିଳାଲିପିରେ ନିଜ ପିତାଙ୍କଦ୍ୱାରା ଖୋଳା ହୋଇଥିବା "ଚନ୍ଦ୍ରଭାଗା" ଓ "ଗୋମତୀ" ନାମକ ଦୁଇଟି ପଯ୍ଃପ୍ରଣାଳୀର ବିଷୟ ବର୍ଣ୍ଣନା କରିଅଛନ୍ତି । ୪୧୩ ଖ୍ରୀଷ୍ଟାବ୍ଦରେ ଫା ହ୍ୟାଂ ଯବକୁ ଆସିଥିଲେ । ସେ ଉଲ୍ଲେଖ କରିଛନ୍ତି ଯେ ସେତେବେଳେ ଯବରେ ଅନେକ ବ୍ରାହ୍ମଣ (ବ୍ରାହ୍ମଣ୍ୟ-ଧର୍ମାବଲମ୍ବୀ) ବାସ କରୁଥିଲେ । ସେ ସେଠାରୁ ଦୁଇ ଶତ ବ୍ରାହ୍ମଣ୍ୟ

* Orissa in the Making—P. I7,
B- C. Mazumdar

¶ Researches on Ptolemy Geography
—PP. 119-39—Zerini.

ବଣିକ ଥିବା ଏକ ବାଣିଜ୍ୟ ବୋଇତରେ କେଣ୍ଟନକୁ ଫେରିଲେ । ୪୩୬ ଖ୍ରୀଷ୍ଟାବ୍ଦରେ ପବର ରଜା ଶ୍ରୀପଦ ଧର୍ମବର୍ମା ଚୀନ ଦରବାରକୁ ଏକ ପ୍ରୀତିପତ୍ର ପଠାଇଥିଲେ ।

ଚୀନ ଦେଶର ଇତିହାସରୁ ଜଣାଯାଏ ଯେ ଖ୍ରୀଷ୍ଟ ଦ୍ୱିତୀୟ ଶତକରେ ଚମ୍ପାରେ ଜଣେ ଶୈବ ରଜା ଥିଲେ । ତାଙ୍କର ଏକ ଶିଳାଲିପିରୁ ଜଣାଯାଏ ଯେ ସେ ଉଦ୍ଭବରେ କାଳିଙ୍ଗ ଓ ବର୍ମାବଂଶୀ ଥିଲେ । ତାଙ୍କର ନାମ ଥିଲା ଶ୍ରୀମାର । ସିଂହାସନରେ ଅଭିଷେକ-ବେଳେ ସେ ପ୍ରଜାମାନଙ୍କୁ ଦେଖାଇଥିବା ଅପାର, କରୁଣା ଯାହା ବର୍ଣ୍ଣିତ ହୋଇଛି ସେହି ଶିଳାଲିପିରେ * । ତାଙ୍କ ବଂଶର ଭଦ୍ରବର୍ମାଙ୍କର ଅନ୍ୟ ଏକ ଶୈଳଲିପିରୁ ଜଣାଯାଏ ଯେ ଏହି ବଂଶ ଶୈବଧର୍ମାବଲମ୍ବୀ § ଥିଲେ ।

* Ancient History of Champa—Vol. 1, PP. 17-22—R. C. Mazumdar.
ବୋଚୌ ଶିଳାଲିପି:—"× × × ପ୍ରଜାନାଂ କରୁଣା × × × ପ୍ରଥମବିଜୟ × × × ଶର୍ତ୍ତମସ୍ୟାଂ । ଆଜ୍ଞପିତଂ ସହିତ × × × ଶ୍ରୀମାର ରାଜକୁଳ ବ(ର୍ଦ୍ଧନେନ) । ଆଜ୍ଞପିତଂ ସ୍ୱଜନ × × × ବାକ୍ୟଂ ପ୍ରଜାହିତକରଂ କରୁଣୋ ହୃଦୟେଣ । ଲୋକସ୍ୟାସ୍ୟ ଗତାଗତ × × × ସିଂହାସନାଧ୍ୟାସୀନେନ ସୁତେ ଭ୍ରାତୃ ନାନ୍ତ୍ୟକେ ସ୍ୱସମୀକରେଣ ଛଳେନ × × × ବୀରସ୍ୟ × × × ।"

§ ମୈସୋନ ଶୈଳଲିପି:—(ଏକ)
(ପ୍ରଥମ ଧାଡ଼ି) ନମୋ ଦେବାୟ ଭଦ୍ରେଶ୍ୱର ସ୍ୱାମୀପାଦପ୍ରସାଦାତ୍ ଅଗ୍ନୟେ ସ୍ୱାଜୁହ୍ୱଂ କରିଷ୍ୟାମି ।
[ ଅପରପୃଷ୍ଠାକୁ ଦେଖ ]

ଚୀନ ଦେଶର ଷାଂ ବଂଶର ଇତିହାସରୁ ଯବଦ୍ୱୀପର କଳିଙ୍ଗ ରାଜ୍ୟର କଥାର ପ୍ରତ୍ୟକ୍ଷ ବିବରଣ ମିଳେ । ଯବର କଳିଙ୍ଗ-

[ମୁଖପୃଷ୍ଠା ପରେ]

(ଦ୍ୱିତୀୟ ଧାଡ଼ି) ଧର୍ମମହାରାଜ ଶ୍ରୀଭଦ୍ରବର୍ମଣୋ ଯାବଚ୍ଚନ୍ଦ୍ରାଦିତ୍ୟ ତାବତ୍ ପୁତ୍ରପୌତ୍ରଂ ମୋଦତ ପୃଥିବୀପ୍ରସାଦାତ୍ କର୍ମସିଦ୍ଧିରସ୍ତୁ ।

(ଦୁଇ) ଚମ୍ପା ବା ଆଧୁନିକ ଆନାମରେ ଥିବା କ୍ୱାଂନାଂ ଜିଲ୍ଲା ଅନ୍ତର୍ଗତ ମାଇ ସଂ ଗ୍ରାମସ୍ଥ ଭଦ୍ରେଶ୍ୱର (ଶିବ) ମନ୍ଦିର ସ୍ତୂପ ଖଣ୍ଡରେ ଥିବା ଭଦ୍ରବର୍ମାଙ୍କ ୨୧ ଧାଡ଼ୀବିଶିଷ୍ଟ ଦୁଇ ସ୍ତମ୍ଭର ଶିଳାଲେଖ:—

(ପ୍ରଥମ ସ୍ତମ୍ଭ) ୧—ସିଦ୍ଧଂ ନମୋ ମହେଶ୍ୱରଂ ଉମାଞ୍ଚ ପ୍ର.........

୨—ବ୍ରହ୍ମାଣଂ ବିଷ୍ଣୁମେବ ଚ ନମୋ ପୃଥିବୀବାୟୁରାକାଶମପଃ

୩—ଜ୍ୟୋତିଶ୍ଚ ପଞ୍ଚମଂ ନମସ୍କୃତ୍ୟାହମିଚ୍ଛାମି ସର୍ବବଶେଷେ-ଭନ୍ତ୍ରଧାତଂ ଦୁଷ୍କୃତ ।

୪—କର୍ମ ବ୍ୟପୋହନ୍ ସୁକୃତୋନଯୁତନ୍ତୁଦା ଭଦ୍ରେଶ୍ୱର ସ୍ୱାମୀପଦାନୁଧ୍ୟାତେନ ଗୃହ୍ୟାକଂ ମହାର(ଜେନ)

୫—ଭଦ୍ରବର୍ମଣା ମାନୁଷ୍ୟମଧ୍ୟାନଂ ଲ(ବ୍ଧା) ଭଦ୍ରେଶ୍ୱରାୟ ଅକ୍ଷୟ୍ନୀ ନୀବୀ ଦତ୍ତା ଯଥା (ପୂର୍ବେଣ)

୬—ସୁଲହ ପର୍ବତୋ ଦକ୍ଷିଣେନ ମହାପର୍ବତଃ ପଶ୍ଚିମେନ କୁଚକ ପର୍ବତଃ ଉତ୍ତରେଣ ମହାନଦୀ ।

୭—ପରିମାଣାଭ୍ୟନ୍ତର ସକୃଟୁମ୍ବୀଜନା ଭୂମିର୍ଦତ୍ତାଜନପଦମର୍ଯ୍ୟାଦା ଷଡ଼ଭାଗେ ପି......

୮—ସ୍ୱାମିନା ଦଶଭାଗେନାନୁଗୃହୀତା ଦେବସ୍ୟ ଦେୟା ଇତି ତଦେବ ଯଥାବଲୋକିତମଭୂଦ୍(ତୋ)

[ଅପରପୃଷ୍ଠାକୁ ଦେଖ]

ରାଜା ସାଂ ଦରବାରକୁ ଜଣେ ଦୂତ ପଠାଇଥିଲେ (୭୩୭-୪୯) ।
ଏହି ପର ରାଜ୍ୟକୁ ସୁମାତ୍ରାର ଶ୍ରୀବିଜୟ ରାଜ୍ୟ କ୍ଷମତାରେ

[ପୂର୍ବପୃଷ୍ଠା ପରେ]

୯—ଦେବସ୍ୟ ଜନ୍ମପ୍ରଭୃତି ଧର୍ମପ୍ରସବୋ ଯଃ ତତ୍ଫଲଂ
ଉଦ୍ରବର୍ମଣଃ ଯଦ କଶ୍ଚିଦ୍ (ଆ)କ୍ରମ୍ୟ ହର(ତି)

୧୦—ବିନାଶୟିତ ବା ମୂକ୍ତଦୋଷା କୁଠ୍ଠ୍ୟୁନିଃ ତସ୍ୟୋପରି ଅଧର୍ମଃ ସ୍ୟାତ୍
ଗୃହୁର୍ବୈଦ୍ୟଂ ରାଜା(ନମ୍)

୧୧—ରାଜମାସଂ ବା ସଦ୍ଧ କୁଠ୍ୟୁଭିଃ ବଙ୍କପସ୍ୟାମି ମମାନୁକମ୍ପାର୍ଥଂ ପରିଦ୍ଧା
ଦତ୍ତଂ ମା ବିନାଶୟ

(ଦ୍ୱିତୀୟ ସ୍ତମ୍ଭ) ୧୨—ଯଦ୍ଧ ବିନାଶୟଥ ଜନ୍ମନି ଜନ୍ମନି ବୋ ଯତ୍ପ୍ରକୃତଂ
ତନ୍ମମ ସ୍ୟାତ୍

୧୩—ଯଚ୍ଚ ମମ ଦୁଷ୍କୃତଂ ତଦ୍ ଯୁଷ୍ମାକଂ ସ୍ୟାତ୍ ଅଥ ସମ୍ୟକ୍ ପରିପାଳୟଥ
ତଦ୍ ଯୁଷ୍ମାକମେବ

·୧୪—ଧର୍ମ ସ୍ୟାଦତି ଭୂୟୋ ବିଜ୍ଞା(ପ)ୟାମି ଯ ଇହ ପ୍ରଭବତି·········
ଦେବବଳିକାରକାଃ

୧୫—ତେଷାଂ କର୍ମ ନ କାରୟିତବ୍ୟଂ ସ୍ୟାତ୍ ଓର······ରହରତଂ ବା
ରାଜକୁଳକାର୍ଯ୍ୟମନୁଷ୍ଠେୟଂ·········

୧୬—ଅଥ ଗୁର୍ବୋଂସ୍ମାକଂ ରାଜାନୋ···ଯଚ୍ଛିନ୍ତ୍······
ଫଳାଦ୍ୟୋପ୍···· ·ପାଦେଷୁ ପତିତବ୍ୟମିତି

୧୭—(ପ୍ରାୟ ୨୨ ଗୋଟି ଦୁଷ୍ପାଠ୍ୟ ଅକ୍ଷର)

୧୮—କୁଶଳାୟତନାଃ ବହୁଳବନ୍ଚ·········

୧୯—·········ଅନ୍ୟେନ୍ ନ ହରିତୋ ଧର୍ମଭିଃ·········

[ଅପର ପୃଷ୍ଠାକୁ ଦେଖ]

ଛଟି ଯାଉଥିଲା । ଶ୍ରୀବଳସ୍ୟ ରାଜା ପୂର୍ବଦ୍ୱୀପପୁଞ୍ଜକୁ ରାଜନୈତିକ ସମ୍ପର୍କ ଓ ଉନ୍ନତ ଦାନ କରିଥିଲା । ଖ୍ରୀଷ୍ଟ ଅଷ୍ଟମ ଶତକରୁ

[ପୂର୍ବପୃଷ୍ଠା ପରେ]

୨୦—………ପାଳୟିତ ତସ୍ୟୈଷ ଧର୍ମଃ ଯୋ ନତୁ
ପାଳ(ୟ)ତ ଅଭନାଶୟତୁ ଅଥ ବନାଶୟତ ।

୨୧—………ତସ୍ୟ ଭଦ୍ରେଶ୍ୱରସ୍ୱାମୀ ଜାନାତ ।

ନୋଟ୍—ଏହି ମାଇସଂ ଶିଳାଲିପି M. Finot ସମ୍ପାଦନ କରିଥିଲେ । ଏହା ଖ୍ରୀଷ୍ଟ ପଞ୍ଚମ ଶତାବ୍ଦୀର ଶିଳାଲିପି ବୋଲି ସେ ମତ ଦେଇଛନ୍ତି । —Bulletin de L' Ecole Fraincaise D' Extreme Orient, Vol. II, P. 187.
ମାଇସ (Myson) ର ପ୍ରାଚୀନ ନାମ ଅମରାବତୀ । ଚମ୍ପାର ବୃହତ୍ତମ ନଦୀର ପ୍ରାଚୀନ ନାମ ମହାନଦୀ ।

(ଚନ) ମାଇସ ଗ୍ରାମରୁ ଅଳ୍ପ ଦୂରରେ ଥିବା ସେୟମ୍ ସୋଁ ପାହାଡ଼ ଗାତରେ ଗୃହ ପଂକ୍ତିବଦ୍ଧିଷ୍ଟ ଅନ୍ୟ ଏକ ଖୋଦନ ଅଛି । ଏହି ଶିଳାଲିପି ସେହି ବିଦ୍ୱାନ୍ M. Finot ସମ୍ପାଦନ କରିଛନ୍ତି । ଏହା ମଧ୍ୟ ଖ୍ରୀଷ୍ଟ ପଞ୍ଚମ ଶତକର ଏବଂ ଭଦବର୍ମାଙ୍କର ସମସାମୟିକ । ଏଥିରେ ଭଦ୍ରେଶ୍ୱର ମନ୍ଦିରର ସୀମା ନିର୍ଦ୍ଧାରିତ ହୋଇଅଛି ।

ସେୟମ୍‌ସୋଁ ଶିଳାଲିପି:—

୧ । ପୂର୍ବେଣ ସୁ (ଲ)
୨ । ହ ପର୍ବତ
୩ । ଦକ୍ଷିଣେନ ମହା…ପଶ୍ଚିମେନ କୁଟକ ପ
୪ । ର୍ବତ……ଉତ୍ତରେଣ ମହାନଦୀ ।

[ଅପର ପୃଷ୍ଠାକୁ ଦେଖ]

ସାତ ଶହ ବର୍ଷ କାଳ ଶ୍ରୀବିଜୟ ରାଜ୍ୟ ଯବ, ବାଲି, ମଳୟ, କାମ୍ବୋଡ଼ିଆ ଓ ଚମ୍ପାର ଅଧିରାଟ୍ ଥିଲା । ଚଣ୍ଡିକଲସନ ଓ ବରବୁଦୁରରେ ଥିବା ଶିଳ୍ପ ଅବଶେଷରୁ ସେଠେବେଳର ଶୈଳେନ୍ଦ୍ର-ବଂଶର ପୁଷ୍ଟଳ କୀର୍ତ୍ତି ଓ ଗରିମାର ପରିଚୟ ଓ ପ୍ରମାଣ ମିଳେ । ସୁମାତ୍ରା ବୈଦିକ ଧର୍ମପନ୍ଥୀ ଶୈବଧର୍ମର ଶକ୍ତି-ପୀଠ ଥିଲା । ଶ୍ରୀବିଜୟ ଶୈଳେନ୍ଦ୍ର ବଂଶ ମହାଯାନ ବୌଦ୍ଧଧର୍ମର ପୃଷ୍ଠପୋଷକ ଥିଲେ । ଏହି ବଂଶର ମହାରାଜା 'ବାଳପୁତ୍ର' ୮୬୦ ଖ୍ରୀଷ୍ଟାବ୍ଦରେ ନାଳନ୍ଦାରେ ଏକ ବୌଦ୍ଧମଠ ସ୍ଥାପନ କରିଥିଲେ । ଯବଦ୍ୱୀପରେ ମାତରଂ ରାଜ୍ୟର ଶୈଳେନ୍ଦ୍ର ବଂଶର ଲିଖଲିପି ଏବଂ ଏହି ଅଧ୍ୟାୟରେ ଉଲ୍ଲିଖିତ ବୋଚୌ, ଗ୍ରୈଦାନ, ମାଇସଂ, ଶ୍ୟେମ୍‌ରେୟାଁ ପ୍ରଭୃତି ଶିଳାଲେଖିଳିପିର ଅକ୍ଷର ତୋଷାଳୀ ଓଡ଼ିଶାରେ ବ୍ୟବହୃତ ପ୍ରାଚୀନ ଦେବନାଗରୀ ଲିପି ସହିତ ସମାନ ଏବଂ ସେ ସମସ୍ତର ଭାଷା ସଂସ୍କୃତ ।

ବାଲିଦ୍ୱୀପରେ ମିଳିଛି ଚତୁର୍ଦ୍ଦଶ ଶତାବ୍ଦୀର ଏକ ମୁଷ୍ଟି ଓଡ଼ିଆ ଲିପି (ତଦାନୀନ୍ତନ ଓଡ଼ିଶାରେ ବ୍ୟବହୃତ ଲିପି), ଯହିଁରୁ ପ୍ରମାଣିତ ହୁଏ ଯେ ସେତେବେଳେ ବାଲି ଓ ଓଡ଼ିଶା ମଧ୍ୟରେ ଘନିଷ୍ଠ

[ପରିଶିଷ୍ଟାରୁ ଦେଖ]

ନୋଟ୍—ଖ୍ରୀଷ୍ଟ ୧୯୮ରୁ ୧୬୫ ମଧ୍ୟରେ କାମ୍ବୋଜ (କମ୍ବୋଡ଼ିଆ) ବା କାମ୍ବୋଡ଼ିଆର ଲୋକେ ଚମ୍ପା ଜୟ କରିଥିଲେ ।

ଏହି ସମସ୍ତ ଶୈଳଲିପି ଓ ଶିଳାଲିପିର ଅକ୍ଷର ତଦାନୀନ୍ତନ ଓଡ଼ିଶାରେ ବ୍ୟବହୃତ ପ୍ରାଚୀନ ଦେବନାଗରୀ ଲିପି ଏବଂ ତହିଁର ଭାଷା ସଂସ୍କୃତ । ତେବେ ଖୋଦନରେ ରହିଛି କେତେକ ବର୍ଣ୍ଣପ୍ରମାଦ ।

ବାଣିଜ୍ୟସମ୍ପର୍କ ଥିଲା । ଓଡ଼ିଶାର ବାଲିଯାତ୍ରା ଓ ବୋଇତବନ୍ଦାଣ ପ୍ରଥା ଅଦ୍ୟାବଧି ଏହି ବାଣିଜ୍ୟ ସମ୍ପର୍କର ସୂଚନା ଦିଏ । ବାଲିଦ୍ୱୀପ ଦିନେ ଯେ ଓଡ଼ିଆ ବାଣିଜ୍ୟର କେନ୍ଦ୍ର ଥିଲା ସେଥିରେ ସନ୍ଦେହର ଅବସର ନାହିଁ ।

ଦୀପବଂଶ, ମହାବଂଶ ପ୍ରଭୃତି ଜାତକ ବୌଦ୍ଧଗ୍ରନ୍ଥ ମାନଙ୍କରୁ ଜଣାଯାଏ ଯେ ବୁଦ୍ଧଦେବଙ୍କ ଠିକ୍ ମୃତ୍ୟୁବେଳକୁ କଳିଙ୍ଗରାଜପୁତ୍ର ବିଜୟ ସିଂହଳରେ ଏକ ରାଜବଂଶ ସ୍ଥାପନ କରିଥିଲେ । ଏହା ସିଂହଳର ପ୍ରଥମ ଆର୍ଯ୍ୟ ରାଜବଂଶ । ଏଥିରୁ ଜଣାପଡ଼ିବ ଯେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତକରେ ଏବଂ ତାହାର ପୂର୍ବେ କଳିଙ୍ଗ ଓ ସିଂହଳ ମଧ୍ୟରେ ବାଣିଜ୍ୟସମ୍ପର୍କ ରହିଥିଲା । ସମ୍ରାଟ୍ ଅଶୋକ ତାମ୍ରଲିପ୍ତ ବନ୍ଦରରୁ ମହେନ୍ଦ୍ର ଓ ସଙ୍ଘମିତ୍ରାଙ୍କୁ ଧର୍ମ ମହାମାତ୍ର ରୂପେ ତାମ୍ରପର୍ଣ୍ଣୀ (ସିଂହଳ)କୁ ପଠାଇଥିଲେ । ଖ୍ରୀଷ୍ଟ ପଞ୍ଚମ ଶତକରେ ଫାହିୟାଂ ତାମ୍ରଲିପ୍ତରୁ ସିଂହଳକୁ ଯାଇଥିଲେ । ୧୦୪୫ ଖ୍ରୀଷ୍ଟାବ୍ଦର ଏକ ଶିଳାଲେଖରୁ ଜଣାଯାଏ ଯେ ଦ୍ୱିତୀୟ ରାଜେନ୍ଦ୍ର ଚୋଳ ସିଂହଳର ରାଜା ଶ୍ରୀ ବୀର ଶାଳମେଘଙ୍କୁ ପରାସ୍ତ କରିଥିଲେ ଏବଂ ତାଙ୍କର ଦୁଇ ପୁତ୍ରିଙ୍କୁ ବନ୍ଦୀ କରି ନେଇଥିଲେ । ଏହି ଶାଳମେଘ ତାମ୍ରପର୍ଣ୍ଣୀର କଳିଙ୍ଗବଂଶୀ ରାଜା * । ତାମ୍ରପର୍ଣ୍ଣୀର ରାଜା ପ୍ରଥମ ବିଜୟବାହୁ (ସମୟ: ୧୦୬୦-୧୧୧୯) କଳିଙ୍ଗରାଜକୁମାରୀ ତିଳୋକସୁନ୍ଦରୀଙ୍କୁ ବିବାହ କରିଥିଲେ । ଏକଥା ଜଣାପଡ଼େ ସେହି ଶିଳାଲେଖରୁ ।

* The Cholas—K.A.N.K.Sastri,PP. 301-302.



ବରବୁଦୁରର ଚିତ୍ର

ମହାଭାରତ ଯୁଦ୍ଧରେ କଳିଙ୍ଗରାଜ ଶ୍ରୁତାୟୁଧ ଦୁର୍ଯ୍ୟୋଧନଙ୍କ ପକ୍ଷରେ ଲଢ଼ିଥିଲେ । ଭୀମଙ୍କ ବିପକ୍ଷରେ 'ଜଗତ୍‌କ୍ଷୟଙ୍କର' ଲୋମହର୍ଷଣ ସଂଗ୍ରାମ ଚଳାଇଥିଲେ ତାଙ୍କର ଉତ୍କୃଷ୍ଟ ଧରଣର ଦଶ-ହଜାର ହସ୍ତୀ * । ପାଣ୍ଡବମାନଙ୍କ ରାଜସୂୟ ଯଜ୍ଞରେ କଳିଙ୍ଗରାଜ ସେମାନଙ୍କୁ ହାତୀ ଦାନ୍ତର ବିବିଧ ଶିଳ୍ପ ଓ ବିବିଧ ମଣିମାଣିକ୍ୟରତ୍ନ¶ ଉପଢୌକନ ଦେଇଥିଲେ । ମହାଭାରତର ବର୍ଣ୍ଣନାରେ କାବ୍ୟଗତ କଳ୍ପନାର ମାତ୍ରା ଯାହା ଥାଉ, କିନ୍ତୁ ଏହା ବୁଝିହୁଏ ଯେ ହସ୍ତୀ ତଥା ହାତୀଦାନ୍ତର ଶିଳ୍ପ ଓ ମଣିମାଣିକ୍ୟରତ୍ନ ସକାଶେ କଳିଙ୍ଗ ପ୍ରସିଦ୍ଧି ଲାଭ କରିଥିଲା । କଳିଙ୍ଗର ପ୍ରଧାନ ପଣ୍ୟ ଥିଲା ହସ୍ତୀ, ହାତୀଦାନ୍ତର କାରୁକାର୍ଯ୍ୟ (ଯଥା: ପଲଙ୍କ), ହୀରା, ସୁନା, ରତ୍ନ ଓ ସୂକ୍ଷ୍ମ ବସ୍ତ୍ର । ତାମ୍ରପର୍ଣ୍ଣୀର ହସ୍ତୀ ଆକାରରେ ବଡ଼ ଓ ଗୁଣରେ ସରସ ଥିବାରୁ ‡ କଳିଙ୍ଗ ସେଠାରୁ ବହୁତ ସଂଖ୍ୟାରେ ହସ୍ତୀ ଆମଦାନୀ କରୁଥିଲା । ବ୍ରହ୍ମଦେଶରୁ ମଧ୍ୟ ହସ୍ତୀ ଆସୁଥିଲେ । ଏହି ସବୁ ହସ୍ତୀ ବୋଇତ ଯୋଗେ ଆସୁଥିଲେ । ଏଣେ କଳିଙ୍ଗର ଅରଣ୍ୟାନୀ ମଧ୍ୟରେ ଧରା ଯାଉଥିଲେ ଅସଂଖ୍ୟ ହସ୍ତୀ § । ଏସବୁ ହସ୍ତୀ କଳିଙ୍ଗ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ବିକ୍ରି କରୁଥିଲା । ଚିଲିକାର ମାଣିକପାଟଣା ତାମ୍ର ଅନୁଶାସନରୁ ଜଣାପଡ଼େ ଯେ ବହୁସଂଖ୍ୟକ ହସ୍ତୀ ଘାଟ ପାର

* ମହାଭାରତ—ଭୀଷ୍ମପର୍ବ—ଅଧ୍ୟାୟ ୫୪ ।

¶ ମହାଭାରତ—ସଭାପର୍ବ—ଅଧ୍ୟାୟ ୨୮ ।

‡ Ancient India—Megasthenes and Arrian—M'Crindle.

§ ଅର୍ଥଶାସ୍ତ୍ର—କୌଟିଲ୍ୟ ।

ହେଉଥିଲେ । ସେମାନେ ନୌକା ଯୋଗେ ପାର ହେଲେ ଏକଟଙ୍କା, ପଦବ୍ରଜରେ ଗଲେ ଦୁଇ ଅଣା ଘାଟକଉଡ଼ି ଦେବାକୁ ପଡୁଥିଲା । ହାଡ଼ଦାନ୍ତ ଓ ସୂକ୍ଷ୍ମ ବସ୍ତ୍ର ତାମ୍ରଲିପ୍ତର ମୁଖ୍ୟ ପଣ୍ୟ ଥିଲା * ।

ଜନଶ୍ରୁତି ଅଛି ଯେ କଳିଙ୍ଗରାଜା ଥରେ ଅଯୋଧ୍ୟାରାଜାଙ୍କୁ ଖଣ୍ଡିଏ ସୂକ୍ଷ୍ମ ବସ୍ତ୍ର ଉପହାର ଦେଇଥିଲେ । ଜଣେ ଭକ୍ଷୁଣୀ ତାହା ପିନ୍ଧିବାରୁ ଲୋକେ କହିଲେ ସେ ଉଲଗ୍ନ ଦିଶୁଛନ୍ତି । ରାତିରେ ଘାସ-ଚକଡ଼ା ଉପରେ ବିସ୍ତାର କରି କଳିଙ୍ଗବସ୍ତ୍ରର ସୂକ୍ଷ୍ମତା ପରୀକ୍ଷା ହେଉଥିଲା । ଶିଶିରକଣାରେ ରାତିସାକ ତନ୍ତୁ ସକାଳକୁ ଘାସ ସଙ୍ଗେ ବସ୍ତ୍ର ମିଶି ରହୁଥିଲା । ବସ୍ତ୍ର ପୃଥକ୍ ଜିନିଷ ବୋଲି ବାରି ହେଉ ନ ଥିଲା । ଏପ୍ରକାର ସୂକ୍ଷ୍ମ ବସ୍ତ୍ର ସାଇତା ହେଉଥିଲା ବାଉଁଶ ନଳି ଭିତରେ § । ତାମିଲ୍ ଦେଶବାସୀ ଏପ୍ରକାର ବସ୍ତ୍ରକୁ ଆଦରରେ ନାମ ଦେଇଥିଲେ 'କଳିଙ୍ଗ' ବୋଲି । କୌଟିଲ୍ୟ କଳିଙ୍ଗ ସୂକ୍ଷ୍ମ ବସ୍ତ୍ରକୁ "ଧବଳ ସୂକ୍ଷ୍ମ ଦୁକୂଳ" ବୋଲି ତାଙ୍କ ଅର୍ଥଶାସ୍ତ୍ରରେ ବର୍ଣ୍ଣନା କରିଛନ୍ତି ।

ମୌର୍ଯ୍ୟସରକାରଙ୍କ ଭୂମିକର (ବଳି ଓ ଭାଗ) ଅପେକ୍ଷା ପଣ୍ୟଶୁଳ୍କ ଅଧିକ ହେଉଥିଲା । ରୋମ, ମିଶର, ଗ୍ରୀସ୍, ସିରିଆ, ପାରସ୍ୟ, ଚୀନ୍, ସିଂହଳ ଓ ସୁବର୍ଣ୍ଣଦ୍ୱୀପ ସଙ୍ଗେ ସେତେବେଳେ ବାଣିଜ୍ୟ ଚାଲୁଥିଲା ।

* Periplus of the Erythrean Sea.

§ ଉପେନ୍ଦ୍ର ଭଞ୍ଜ—ବୈଦେହୀଶବିଳାସ—୧୦ମ ଅଧ୍ୟାୟ—୧୭ ଶ୍ଳୋକ ।

ବଂଶନଳରେ ଥିବାର ଯେ ।
ବାଛି ପିନ୍ଧିଲେ ଦୁର୍ବାଦଳ ଜଳ ରେଳ ।

ସାର୍ ଜ. ଉଆଟ୍ କହନ୍ତି ଯେ ପୂର୍ବକାଳରେ କେବଳ ଭାରତରେ ହିଁ ହୀରା ମିଳୁଥିଲା । ଉତ୍ପତ୍ତି, ଜ୍ୟୋତି, ଆକାର ଓ ଗୁଣ ଭେଦରେ ଅର୍ଥଶାସ୍ତ୍ରରେ ହୀରା ଛଅ ଭାଗରେ ବିଭକ୍ତ:

ଉତ୍ପତ୍ତି—ସୌରାଷ୍ଟ୍ରକ, ମଧ୍ୟରାଷ୍ଟ୍ରକ (ମହାକୋଶଳ), କାଶ୍ମକ, ଶ୍ରୀକଣ୍ଠକ (କାଳହଟନ), ମଣିକଣ୍ଠକ ଓ ଇନ୍ଦ୍ରବାନକ ।

ଜ୍ୟୋତି—ବିଡ଼ାଳଚକ୍ଷୁ, ଶିରୀଷପୁଷ୍ପ, ଗୋମୂତ୍ର, ଗୋମେଦ, ସ୍ଫଟିକ ଓ ମାଳତୀପୁଷ୍ପ ।

ଗୁଣ ଓ ଆକାର ପ୍ରହାରସହନ, ସମକୋଣୀ, ଭାଜନଲେଖା, କୁଭ୍ରମୀ, ଷଟ୍କୋଣୀ ଓ ଦୀପ୍ତିମାନ * ।

ଅର୍ଥଶାସ୍ତ୍ରର ବର୍ଣ୍ଣନାମତେ ମହାକୋଶଳ ବଜ୍ରୋତ୍ପତ୍ତିର ପ୍ରାନ୍ତଭୂମି ।

ପୂର୍ବୋକ୍ତ ଛଅ ପ୍ରକାର ହୀରା ମଧ୍ୟରୁ କୋଶଳରେ (ସମ୍ବଲପୁରରେ) ମିଳୁଥିଲା ଶିରୀଷପୁଷ୍ପନିଭ ହୀରା, ଯାହା ପ୍ରମାଣିତ ହେବ ନିମ୍ନୋଦ୍ଧୃତ ଶ୍ଳୋକରୁ:—

ବେଳାତଟେ ବିଶୁଦ୍ଧଂ, ଶିରୀଷକୁସୁମୋପମଂ ଚ କୌଶଳକଂ ।
ସୌରାଷ୍ଟ୍ରକଂ ତାମ୍ରକୃଷ୍ଣଂ, ସୌର୍ପାରକଂ ବଜ୍ରଂ ‡ ।
କୋଶଳେ ଚ କଳିଙ୍ଗେ ଚ ମାତଙ୍ଗେ ଚ ହିମାଳୟେ ।
ପୁଣ୍ଡ୍ରେ ଚୈବ ସୌରାଷ୍ଟ୍ରେ ବଜ୍ରସ୍ୟୋତ୍ପତ୍ତିଭୂମୟଃ § ।

* Ancient India and South Indian History and Culture, Vol. II, PP. 536-541— S. Krishnaswami Aiyangar, 1941 edition.

‡ ବରାହମିହିର—ବୃହତ୍ ସଂହିତା—ଅଷ୍ଟମ ଅଧ୍ୟାୟ ।

§ ଚଣ୍ଡେଶ୍ୱର—ରତ୍ନପରୀକ୍ଷା ।

ଶିରୀଷ ପୃଷ୍ଠ ପର ଜ୍ୟୋତିଷ୍ମାନ୍ ହୀରା ମିଳୁଥିଲା ସମ୍ବଲପୁରର ହୀରାକୁଦରୁ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକରେ ଟଲେମି ସମ୍ବଲକ (ସମ୍ବଲପୁର)କୁ "ପ୍ରାସିକା (ପ୍ରାଚ୍ୟ) ଦେଶସ୍ଥ ହୀରାପ୍ରସୂ ଦେଶ" ବୋଲି ବର୍ଣ୍ଣନା କରିଛନ୍ତି । ସମ୍ବଲପୁର ହୀରାଖଣିରୁ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରଚୁର ପରିମାଣରେ ହୀରା ମିଳୁଥିଲା ଏବଂ ସମ୍ବଲପୁରର ହୀରାଖଣି ଭାରତର ଅତି ପ୍ରାଚୀନ ଓ ବିଖ୍ୟାତ ହୀରାଖଣିମାନଙ୍କ ମଧ୍ୟରେ" || ପ୍ରସିଦ୍ଧ ଥିଲା । "ପୃଥିବୀର ବୃହତ୍ତମ ହୀରାମାନଙ୍କ ସହିତ ଆକାରରେ ସମାନ ଥିଲା ସମ୍ବଲପୁରର ହୀରା" * । "ବ୍ରାହ୍ମଣୀ, ସୁବର୍ଣ୍ଣରେଖା, ମହାନଦୀ ଓ ଇବର ରେଣୁ ଧୌତ କରି ଝରାମାନେ ପ୍ରଚୁର ସୁନା ପାଉଥିଲେ" † । ସେମାନେ ଏହି ଜୀବିକା ଯୋଗେ ପୂର୍ବକାଳରେ ଧନପତି ଥିଲେ । ଜଣେ ଝରା ଛୋଟନାଗପୁର ଅନ୍ତଃପାତୀ ବାରୁତ ଜମିଦାର ହୋଇଥିଲେ । "କିନ୍ତୁ ଏବେ ଝରାମାନେ ଦିନକୁ ଗୁରି ଅଣାରୁ ଅଧିକ ଆୟ କରନ୍ତି ନାହିଁ" § ।

ସମ୍ବଲପୁରର ଶିରୀଷକୁସୁମୋପମ ହୀରା ନୌକାଯୋଗେ ମହାନଦୀ ବାଟେ ପୂର୍ବୋପକୂଳର ବନ୍ଦରମାନଙ୍କୁ କିମ୍ବା ସ୍ଥଳପଥରେ ପଶ୍ଚିମୋପକୂଳର ବନ୍ଦରମାନଙ୍କୁ ରପ୍ତାନି ହେଉଥିଲା । ସେଠାରୁ ସେଗୁଡ଼ିକ ବିଦେଶାନ୍ତରକୁ ରୋମର ବଜାର ପର୍ଯ୍ୟନ୍ତ ଯାଉଥିଲା । ସ୍ୱଭାବତଃ ସୁନ୍ଦର, ଜ୍ୟୋତିର୍ମୟ, ସମକୋଣୀ, ଭଞ୍ଜନଲେଖା ଓ

|| Accounts in Mughal India—Tavernier.

*†§ Bengal, Bihar, Orissa and Sikkim—P. 90—L.S.S. Omalley.

ପ୍ରହାରସହନ ଥିବାରୁ ଦେଶଦେଶାନ୍ତରରେ ଏହି ହୀରାର ଆଦର ଥିଲା । ପ୍ରସିଦ୍ଧ ଐତିହାସିକ ଗିବନ ରୋମଦଙ୍କାରରେ ସମ୍ବଲପୁର ହୀରାର କଥା ବର୍ଣ୍ଣନା କରିଛନ୍ତି । ଖାରୁର ସମ୍ବଲପୁରିଆ ଝରା ଜମିଦାର ହୀରା ବଦଳରେ ଛୋଟନାଗପୁର ରାଜାଙ୍କଠାରୁ ଖାରୁ-ଜମିଦାରି କିଣିଥିଲେ ।

ଶିରୀଷ ଫୁଲ ଭଳି ଶ୍ୟାମବର୍ଣ୍ଣ । ସମ୍ବଲପୁର ହୀରାର ସେହି-ପ୍ରକାର ଜ୍ୟୋତି ଅତି ମନୋମୁଗ୍ଧକର ଥିଲା । କୁଭୁମୀ ଥିବାରୁ ତାହା ଆଲୋକରେ ଜକଜକ କରୁଥିଲା । ଗୋଟିଏ ପଟରୁ ଆଲୋକ ଭେଦ କରି ଫୁଟି ଦିଶୁଥିଲା ଅନ୍ୟ ପଟକୁ । ବକୋଣୀ ହୀରା ଅଶୁଭ-ସୂଚକ; ଅର୍ଥାତ୍ କୋଣ ନ ଥିବ, ଅସମାନ କୋଣ ଥିବ, ଗୋଟିଏ ପଟ ବଙ୍କେଇଥିବ ବୋଇଲେ, ସେପରି ହୀରାକୁ କେହି ଆଦର କରନ୍ତି ନାହିଁ । କିନ୍ତୁ ସମ୍ବଲପୁର ହୀରା ସମକୋଣୀ ଓ ସମପାର୍ଶ୍ୱ ଥିଲା । ଭଜନ ବା ଧାତୁପାତ୍ରରେ ତଦ୍ୱାରା ଲେଖାଯାଇ ପାରୁଥିଲା । ଏଣୁ ତାହାକୁ କହାଯାଉଥିଲା "ଭଜନଲେଖା" । ତାହା ଥିଲା ପ୍ରହାରସହନ, ଅର୍ଥାତ୍ ଭଙ୍ଗୁର ନ ଥିଲା ଲୁହାମାଡ଼ରେ । ସେଥିପାଇଁ ଅନ୍ୟ ଜନସ୍ତରେ ଫୋଡ଼ କରାଯାଇ ପାରୁଥିଲା । ଅଣ୍ଡିରା ଗ୍ଲାଗର ରକ୍ତରେ ହୀରାକୁ ବୁଡ଼ାଇ ରଖିଲେ, ତାହା ହାତୁଆରରେ କଟାଯାଇ ପାରୁଥିଲା ।

ସମ୍ବଲପୁରର ପଣ୍ୟ ମହାନଦୀ ବାଟେ ପୂର୍ବୋପକୂଳକୁ ଯାଉଥିଲା । ନରାଜର ତଳକୁ ମହାନଦୀ ତିନି ଶାଖାରେ ବିଭକ୍ତ ହୋଇଥିଲା । ପୁରୀ ଜିଲ୍ଲାରେ ବହି ଯାଉଥିବା ଶାଖାର ଅନେକ ପ୍ରଶାଖା ଥିଲା । ସେମାନଙ୍କ ମଧ୍ୟରେ ପ୍ରଧାନ ଶାଖା ଗନ୍ଧବତୀ ।

ଏହାର ଆଧୁନିକ ନାମ ଗଙ୍ଗୁଆ * । ଏହି ଗନ୍ଧବତୀ ଗ୍ରନ୍ଥାନ୍ତରରେ ପ୍ରାଚୀ ଓ ପୁଷ୍ପଭଦ୍ରା ନାମରେ କଥିତ † । ଦଧିଶ୍ରବା (ଦୟା) ଓ ଭାର୍ଗବୀ ମହାନଦୀର ପ୍ରଶାଖାମାନ § । ଅଧୁନା ଏହି ନଦୀମାନ ପୋତି ହୋଇ ପଡ଼ିଛି ଏବଂ ସେମାନଙ୍କ ଗତିପଥରେ ଭୀଷଣ ପରିବର୍ତ୍ତନ ଘଟିଛି । ତେଣୁ ସେମାନେ ଆଉ ସୁନାବ୍ୟା ନୁହନ୍ତି, କିନ୍ତୁ ପ୍ରାଚୀନ କାଳରେ ମହାନଦୀବାଟେ ଯାଉଥିବା ପଣ୍ୟ ଏହି ଶାଖାନଦୀମାନଙ୍କ ଜରିଆରେ ସମୁଦ୍ର ପର୍ଯ୍ୟନ୍ତ ଗତି କରି ପାରୁଥିଲା । ଏହି ଶାଖାମାନ ଚିଲିକାରେ ବା କୋଣାର୍କ ନିକଟରେ ସମୁଦ୍ରରେ ପଡ଼ୁଥିବାରୁ ଚିଲିକା ଓ କୋଣାର୍କ ଓଡ଼ିଶାର ପ୍ରଧାନ ବନ୍ଦର ଥିଲା । ଭାର୍ଗବୀ ପୁରୀ ନିକଟରେ ସମୁଦ୍ରରେ ପଡ଼ୁଥିବାରୁ ପୁରୀ ବା ଶ୍ରୀକ୍ଷେତ୍ର ମଧ୍ୟ ଏକ ବନ୍ଦର

* ଏକାମ୍ର ଚନ୍ଦ୍ରିକା—ନବମ ଅଧ୍ୟାୟ:—

ଦ୍ୱୈପାଦୋଦ୍ଭବା ଦିବ୍ୟା ନଦ୍ୟାସ୍ତେ ପୂର୍ବଗାମିନୀ ।
ସରିଦ୍ଭବା ଦ୍ୱୈକା ନାମ୍ନା ଗନ୍ଧବତୀ ଶ୍ରୁତା ।

ନୋଟ୍—ସମ୍ଭବତଃ ଆଧୁନିକ କୁଆଖାଇ ଥିଲା ପ୍ରଧାନ ଶାଖା । ଏହାର ନାମ ଗନ୍ଧବତୀ, ପ୍ରାଚୀ, ପୁଷ୍ପଭଦ୍ରା ବା କୁଶଭଦ୍ରା ।

† କପିଳସଂହିତା—୧୬ ଅଧ୍ୟାୟ —

ଗଙ୍ଗା ଗନ୍ଧବତୀ ନାମ୍ନା ଦକ୍ଷିଣାର୍ଣ୍ଣବଗାମିନୀ ।

§ କପିଳସଂହିତା—୨୦ ଅଧ୍ୟାୟ:—

ମହାପାଳ ଶୃଣୁଷ୍ୱାଥ ପ୍ରାଚୀଂ ଗୁପ୍ତ ସରସ୍ୱତୀଂ ।

× × ×

ଥିଲା । ସେହି ପୁଣ୍ୟ ତୀର୍ଥର ନାମ ବୈହ୍ରଣୀ ବା ବୈହ୍ରଣ୍ୟ * ଥିଲା । ପ୍ରାଚୀ ଭୁବନେଶ୍ୱର ବା ଚୌଷାଳି ବାଟେ କୋଣାର୍କକୁ ଯାଇଥିଲା

ଏକାମ୍ରକାନନାତ୍ ପୂର୍ବଂ ଯୋଜନାନ୍ତେ ମହାପତେ ।
ନାମ୍ନା ପ୍ରାଚୀତି ବିଖ୍ୟାତା ସର୍ବଦାସ୍ତେ ସରସ୍ୱତୀ ।

× × ×

କଥିତା ଯା ମୟା ରାଜନ୍ ବହୁପୁଣ୍ୟା ମହାନଦୀ ।
ତସ୍ୟାସ୍ତୁ ତନୟା ଖ୍ୟାତା ଦକ୍ଷିଣେ ଦକ୍ଷିଣଙ୍ଗମା ।
ସା ନଦୀ ଭୃଗୁଣା ନୀତା ତପସା ଚ ମହାତ୍ମନା ।
ତତଃ ସା ଭାର୍ଗବୀ ଖ୍ୟାତା ଗୋସହସ୍ରଫଳପ୍ରଦା ।
ସିଦ୍ଧେଶ୍ୱର ସମୀପାଚ୍ଚ ତଥା ସିଦ୍ଧେଶ୍ୱରାବଧି ।
ଭାର୍ଗବୀ ଭୃଗୁଣା ନୀତା ଗଙ୍ଗାସମ ଫଳପ୍ରଦା ।
ତସ୍ୟାସ୍ତୁ ଦୁହିତା ଧନ୍ୟା ପ୍ରବଭେ ଭୂଜ୍ଞତାତ୍ମର ।
ଦଧିପ୍ରବେତ ବିଖ୍ୟାତା ଏକାମ୍ର ବନସନ୍ନିଧୌ ।
ଆନୀତା ଋଷିଣା ଯାସୌ ତପସା ଚ ଦଧୀଚିନା ।

ନୋଟ୍—ଭାର୍ଗବୀ ନଗର ନିକଟରେ ସିଦ୍ଧେଶ୍ୱର ମନ୍ଦିର ସମୀପରୁ ମହାନଦୀରୁ ବାହାରିଥିଲା । ତାହାର ଶାଖା ଦୟା ଭୁବନେଶ୍ୱର ପାଖ ଦେଇ ଯାଇଥିଲା । ଖାରବେଳଙ୍କ ରାଜଧାନୀ ଦୟା ନିକଟରେ ଥିଲା । ତେଣୁ ସେ ଦୟାରୁ ଏକ କୂଲ୍ୟା ନିଜ ରାଜଧାନୀକୁ ନେଇଥିଲେ ।

* କପିଳସଂହିତା—ତୃତୀୟ ଅଧ୍ୟାୟ :
ବଠପଦ ପଞ୍ଚୁଷ୍ଟୋହମାସ୍ତେ ଖ୍ରୀ ସୁ ବୃଷୋତ୍ଥନେ ।

× × ×

ଦ୍ରଷ୍ଟବ୍ୟସ୍ତେ ତ୍ୱଂ ତପସ୍ୱିନ୍ୟା ଇନ୍ଦ୍ରଜାଲତନ୍ମୁଖଂ ।
ବୈହ୍ରଣ୍ୟାଖ୍ୟଂ ତୀର୍ଥଂ ତସ୍ୟ ପାର୍ଶ୍ୱେ ତତ୍ ଚୈବ ତନ୍ତ୍ରତ । ୨୭।

ଏବଂ ସେହି ତୀର୍ଥର ନାମ ଥିଲ ଚନ୍ଦ୍ରଭାଗା §। ଭୁବନେଶ୍ୱରର ନାମ ଥିଲ ଏକାମ୍ରକାନନ ଏବଂ ଚନ୍ଦ୍ରଭାଗା ଅଞ୍ଚଳର ନାମ ଥିଲ ମୈତ୍ରେୟବନ । ବର୍ଷର ବିଭିନ୍ନ ସମୟରେ ପୁରୀ, ଭୁବନେଶ୍ୱର ଓ କୋଣାର୍କରେ ତିନି ଥର ରଥଯାତ୍ରା ହେଉଥିଲା ‡ ।

କଳିଙ୍ଗ ଉପକୂଳରେ ଥିଲ ଚାରି ପ୍ରଧାନ ବନ୍ଦର : ଚିଲିକା, ପୁରୀ, କୋଣାର୍କ ଓ ତାମ୍ରଲିପ୍ତ । ବିଶାଳ ବନ୍ଦର ଚିଲିକା ଦେଶ-ଦେଶାନ୍ତରଗାମୀ ସହସ୍ର ସୁପୋତ ଧାରଣ କରୁଥିଲା । ମୂଳତଃ ଏଗୁଡ଼ିକ ବାଣିଜ୍ୟ ପୋତାଶ୍ରୟ ଓ ବନ୍ଦର ଥିଲ, ଏବଂ ଫଳତଃ କ୍ରମେ ପୁଣ୍ୟକ୍ଷେତ୍ର ବା ତୀର୍ଥରେ ପରିଣତ ହୋଇଥିଲ । କ୍ଷୁଦ୍ରତର ବନ୍ଦର ମଧ୍ୟରେ କଳିଙ୍ଗର ପଞ୍ଚମ ପୁଣ୍ୟକ୍ଷେତ୍ର ବିରଜା ବା ଯାଜପୁର ନିକଟରେ ସମ୍ଭବତଃ ଅନ୍ୟ ଏକ ବନ୍ଦର ଥିଲ । ସାଳନ୍ଦୀ ଓ ବୈତରଣୀର ଏକତ୍ର ମୁହାଣ ଥିଲ ଧାମରା ନିକଟରେ । ଏହି ଧାମରା ଅନ୍ୟତମ ବନ୍ଦର ଥିଲ ।

ବନ୍ଦର ବା ପୋତାଶ୍ରୟମାନ ସାଧାରଣରେ ପ୍ରଶସ୍ତି ଲଭିଥିଲ ପୁଣ୍ୟକ୍ଷେତ୍ରରୂପେ । ବାଣିଜ୍ୟପରାୟଣ କଳିଙ୍ଗବାସୀ ବନ୍ଦରମାନଙ୍କ ସଙ୍ଗେ ତୀର୍ଥଗୌରବ ସଂଶ୍ଳିଷ୍ଟ କରୁଥିଲେ । ବନ୍ଦର ଓ ତୀର୍ଥ

§ ‡ କପିଳସଂହିତା—ଷଷ୍ଠ ଅଧ୍ୟାୟ :

ତତଃ ପ୍ରଭାତସମୟେ ନଦୀଂ ସ୍ନାନାର୍ଥମାଯଯୌ ।
ଚନ୍ଦ୍ରଭାଗାଂ ମହାପୁଣ୍ୟାଂ ଦେବଲୋକପ୍ରଦାୟିନୀଂ ।

× × ×

ମୈତ୍ରେୟାଖ୍ୟେ ବନେ ପୁଣ୍ୟେ ରଥଯାତ୍ରାଂ ମହୋତ୍ସବଂ ।
ଯେ ପଶ୍ୟନ୍ତି ନରା ଭକ୍ତ୍ୟା ଲଭନ୍ତେ ସ୍ୱର୍ଗତିଂ ଧ୍ରୁବଂ ।

ହେବାଦ୍ୱାରା ଦ୍ୱିବିଧ ଗୌରବର ଅଧିକାର ଲାଭ କରି ପୋତାଶ୍ରୟ-ଗୁଡ଼ିକ ଆକର୍ଷଣ କରୁଥିଲା ଲୋକଦୃଷ୍ଟି ଓ ମମତା, ଅର୍ଥାତ୍ ଧର୍ମ-ମହାତ୍ମ୍ୟ ସଙ୍ଗେ ସଂଶ୍ଳିଷ୍ଟ କରିବା ନିମନ୍ତେ କଳିଙ୍ଗବାସୀ ବନ୍ଦର-ମାନଙ୍କୁ ପୁଣ୍ୟକ୍ଷେତ୍ରରେ ପରିଣତ କରୁଥିଲେ । ନିୟମ ଏପରି ବାଧି ହେଲା ଯେ "ରତ୍ନପୋତସଂବାଧ" ବିନା କୌଣସି ସ୍ଥଳୀ ତୀର୍ଥ ହେବାର ଯୋଗ୍ୟ ନୁହେ । ବୃହତ୍ ସଂହିତା ମତରେ ତୀର୍ଥ ହେବାକୁ ଯୋଗ୍ୟ ବା ଉପଯୁକ୍ତ କେବଳ ସେପରି ସ୍ଥଳୀ, ଯେଉଁଠାରେ ସ୍ୱର୍ଣ୍ଣମଣିମାଣିକ୍ୟରତ୍ନ ପ୍ରଭୃତି ପଣ୍ୟର ବିନିମୟ ହୁଏ * । "ରତ୍ନପୋତ ସଂବାଧ" ସ୍ଥଳୀରେ ନିର୍ମିତ ହୋଇଅଛି ଭୁବନବିଖ୍ୟାତ ଦେବାୟତନ-ଶ୍ରୀକ୍ଷେତ୍ରରେ ଜଗନ୍ନାଥ ମନ୍ଦିର, କୋଣାର୍କରେ ଅର୍କ ମନ୍ଦିର, ଧାମରାରେ ବିରଜା ମନ୍ଦିର ଏବଂ "ପୃଥୀସ୍ଥାନ" ତାମ୍ରଲିପ୍ତର ବର୍ଗଭୀମା ତାରା ମନ୍ଦିର ବା କାଳୀ ମନ୍ଦିର ¶ । ପୁରୀ, କୋଣାର୍କ, ତାମ୍ରଲିପ୍ତି, ଧାମରା

* ଅଥବା ସମୁଦ୍ରତୀରେ ବୃଣାଗତରତ୍ନପୋତସଂବାଧେ ।
ଘନ-ନିଚୁଲ-ଲିନ-ଜଳଚର-ସ୍ଥିତାମ୍ବୁ-ଶବଳୀକୃତୋପାନ୍ତେ ।
(ବୃହତ୍‌ସଂହିତା)

¶ ମହାଭାରତ-ବନପର୍ବ-୮୦ ଅଧ୍ୟାୟ :
ସର୍ବକାମସମୃଦ୍ଧସ୍ୟ ଯଜ୍ଞସ୍ୟ ଫଳମଶ୍ନୁତେ ।
ପ୍ରଦକ୍ଷିଣଂ ତତଃ କୃତ୍ୱା ଯଯାତିପତନଂ ବ୍ରଜେତ୍ ।
ହୟମେଧସ୍ୟ ଯଜ୍ଞସ୍ୟ ଫଳଂ ପ୍ରାପ୍ନୋତି ତତ୍ର ବୈ । ୪୯ ।
\+ \+ \+
ତତସ୍ତ୍ରିବିଷ୍ଟପଂ ଗଚ୍ଛେତ୍ ତ୍ରିଷୁ ଲୋକେଷୁ ବିଶ୍ରୁତଂ ।
ଯତ୍ର ବୈତରଣୀ ପୁଣ୍ୟା ନଦୀ ପାପପ୍ରଣାଶିନୀ । ୮୪ ।

ଆଦି ସମସ୍ତ ବାଣିଜ୍ୟକେନ୍ଦ୍ର ଓ ବନ୍ଦର ରୂପେ ପୁଣ୍ୟକ୍ଷେତ୍ରରେ ପରିଗଣିତ ହୋଇଅଛି ।

ପାଲୁର ଓ ଗଞ୍ଜାମ କଳିଙ୍ଗର ଅନ୍ୟ ଦୁଇ ବନ୍ଦର ଥିଲା । ଚିଲିକାର ଆପୃତନ ଏବେ ବିଶେଷ ରୂପେ ବଦଳି ଯାଇଛି । ଦକ୍ଷିଣ ପଟ ଏହା ସଂକୀର୍ଣ୍ଣତର ହୋଇଯାଇଛି । ଚିଲିକା ପୋତାଶ୍ରୟର ବିସ୍ତୀର୍ଣ୍ଣତର ଦକ୍ଷିଣ କୂଳରେ ପାଲୁର ବନ୍ଦର ଥିଲା । ଋଷିକୁଲ୍ୟା ମୁହାଣରେ ଗଞ୍ଜାମ ବନ୍ଦର ଥିଲା । ଗଞ୍ଜାମ ଶବ୍ଦର ଅର୍ଥ ପଣ୍ୟଭୂମି । ମହାଭାରତର ଋଷିକୁଲ୍ୟା ତୀର୍ଥରୂପେ ବର୍ଣ୍ଣିତହୋଇଛି * ।

ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକରେ ଗ୍ରୀକ୍ ପର୍ଯ୍ୟଟକ ଟଲେମି (Ptolemy) ବର୍ଣ୍ଣନା କରିଛନ୍ତି କଳିଙ୍ଗର କେତେକ ଅଞ୍ଚଳର, ନଦୀର, ନଗରର ଓ ବନ୍ଦରର ନାମ :

ତତ୍ର ସ୍ନାତ୍ୱାର୍ଚ୍ଚୟିତ୍ୱା ଚ ଶୂଳପାଣିଂ ବୃଷଧ୍ୱଜଂ ।
ସର୍ବ ପାପବିଶୁଦ୍ଧାତ୍ମା ଗଚ୍ଛେତ ପରମାଂ ଗତିଂ । ୮୫ ।
ମହାଭାରତ—ବନପର୍ବ—୮୩ ଅଧ୍ୟାୟ :—
ତତୋ ବୈତରଣୀଂ ଗତ୍ୱା ସର୍ବପାପପ୍ରମୋଚନୀଂ
ବିରଜା ତୀର୍ଥମାସାଦ୍ୟ ବିରାଜତି ଯଥା ଶଶୀ ।୬।

* ମହାଭାରତ—ବନପର୍ବ—୮୨ ଅଧ୍ୟାୟ :—
ଋଷିକୁଲ୍ୟାଂ ସମାସାଦ୍ୟ ନରଃ ସ୍ନାତ୍ୱା ବିକଲ୍ମଷଃ ।
ଦେବାନ୍ ପିତୃଂଶ୍ଚାର୍ଚ୍ଚୟିତ୍ୱା ଋଷିଲୋକଂ ପ୍ରପଦ୍ୟତେ ।୪୮।
ଯଦି ତତ୍ର ବସେତ୍ ମାସଂ ଶାକାହାରେ ନରାଧିପ ।
ଭୃଗୁତୁଙ୍ଗଂ ସମାସାଦ୍ୟ ବାଜମେଧଫଳଂ ଲଭେତ୍ ।୪୯।

ପଲୁର, କୈନଗୋନା, କରକବଣ୍ଡମ୍, କଳଗର, ତାମଲୀପ୍ସ, ଦୋସର, ଚୋଷଲଇ, ମଲଦ, ଅଦାମାସ, କିଗିପ୍ତନ, ନିଳଙ୍ଗନ, କୋକ୍‌କଗୋଗୋର ।

(୧) ପଲୁର—ପଲୁର ବା ଆଧୁନିକ 'ପାଲୁର' ଆଧୁନିକ ଗଞ୍ଜାମ ଜିଲ୍ଲାର ଚିଲିକା କୂଳରେ ଅବସ୍ଥିତ । ଚିଲିକାର ଜଳ ଅଧୁନା ଏହାଠାରୁ ଅଳ୍ପ ଦୂରକୁ ଘୁଞ୍ଚି ଯାଇଛି । ଟଲେମି କହନ୍ତି ଯେ ପାଲୁର ବା ପଲୁରଠାରୁ ମଳୟଦ୍ୱୀପକୁ ବାଣିଜ୍ୟପୋତ ସିଧାସଳଖ ଯାଉଥିଲା ।

(୨) କୈନଗୋନା—ଇରାନୀୟ ଭାଷାରେ ସୂର୍ଯ୍ୟଙ୍କୁ କହନ୍ତି କୈନୈ, ମିଥ୍ର ବା ମିତ୍ର । ଗୋନା ଓ କୋଣ ସମୋଚ୍ଚାରଣବିଶିଷ୍ଟ । ଅତଏବ, ଅର୍କ କୋଣ ବା କୋଣାର୍କକୁ ଟଲେମି କୈନଗୋନା ବୋଲି କହିଛନ୍ତି ।

(୩) କରକବଣ୍ଡମ୍—ପ୍ରାଚୀନ କଳିଙ୍ଗ ଗଙ୍ଗବଂଶୀୟ ମହାରାଜା ଦାନାର୍ଣ୍ଣବଙ୍କ ପୁତ୍ର ମହାରାଜା ଇନ୍ଦ୍ରବର୍ମାଙ୍କ ରାଜଧାନୀ ଥିଲା ଦନ୍ତପୁର । ତାଙ୍କର ପର୍ଲି ତାମ୍ରଶାସନରୁ ଜଣାଯାଏ * ଯେ ସେ କୁରକବସ୍ତ୍ର ଅନ୍ତଃପାତୀ ଭୂକ୍‌କୁକୁରଚ୍ଛେଦ ନାମକ ଗ୍ରାମ ଦାନ କରିଥିଲେ ଭଗଦତ୍ତ ନାମକ ବ୍ରାହ୍ମଣଙ୍କୁ, ଯେ ଆସିଥିଲେ ଛତଲିଙ୍ଗରୁ । ଏହି କୁରକବସ୍ତ୍ର ବଂଶଧାରା ନଦୀ ନିକଟରେ ଥିଲା । ବଂଶଧାରା ନଦୀର ମୁହାଣରେ କଳିଙ୍ଗପାଟଣା ବା କଳିଙ୍ଗନଗର

* Epigraphia Indica, XIV—PP. 360-363.

ଅଛି । ଝଲେମି ଏହି କୁରକବସ୍ତୁକୁ ପ୍ରାକୃତ ଆକାରରେ କରକବଣ୍ଡମ୍ ବୋଲି କହୁଛନ୍ତି ।

(୪) ନିଗ୍ଲ ପ୍ରନ—କଳିଙ୍ଗ ଗଙ୍ଗବଂଶର ସାମନ୍ତମାନେ ଏକ ଏକ ବର୍ତ୍ତିନୀ ବା ଅଞ୍ଚଳ ଶାସନ କରୁଥିଲେ । ଇନ୍ଦ୍ରବର୍ମାଙ୍କ ୧୪୭ ଗଙ୍ଗାବ୍ଦର ତାମ୍ରଶାସନରେ ଖେଖଲିପାଟଣାର ଉଲ୍ଲେଖ ଅଛି । ଖେଖଲି ଆଧୁନିକ ଟିକାଲି । ଖେଖଲିପାଟଣାକୁ ଝଲେମି ନିଗ୍ଲ-ପତ୍ତନ ବା ନିଗ୍ଲ ପ୍ରନ ବୋଲି ※ କହୁଛନ୍ତି ।

(୫) ତିଲିଙ୍ଗନ—କରକବଣ୍ଡ ସମ୍ପର୍କରେ ପୂର୍ବୋକ୍ତ ତଥାଲିଙ୍ଗ ଝଲେମିଙ୍କ ବର୍ଣ୍ଣିତ ତିଲିଙ୍ଗନ । ଏହି ତିଲିଙ୍ଗନ ନାମରୁ "ତେଲେଙ୍ଗାନା" ଦେଶର ନାମକରଣ ହୋଇଥିବା ସମ୍ଭବ ।

ଗଙ୍ଗବଂଶୀୟ କଳିଙ୍ଗର ହୋଷ୍ଟୁକ ବର୍ତ୍ତିନୀରେ ଦୁଇଟି ବନ୍ଦର ବା ତଙ୍କା ଥିଲା:-ପୁଷ୍ପଗିରି ପାଟଲି ଓ କରଷୋଣ୍ଡକ † । ପାଟଲି ଏକ ପାହାଡ଼ର ନାମ । ମହେନ୍ଦ୍ରଗିରିର ଏକ ଅଂଶ ବିଶେଷ "ପୁଷ୍ପଗିରି" ପର୍ବତର ଗୋଟିଏ ଶୃଙ୍ଗ ବା ପାହାଡ଼କୁ କହା ଯାଉଥିଲା ପାଟଲି । ପୁଷ୍ପଗିରି ପର୍ବତର ଉପତ୍ୟକାରେ ହ୍ୱାଂ ତ୍ସାଂଙ୍କ ବର୍ଣ୍ଣିତ

※ Vide Upalavada Copperplate Grant of Ranaka Ramadeva by S.N. Rajguru—Journal of the Orissa Academy, Vol. 11.; No. I, PP. 69-76.

† J.B.O.R.S., XIV Part II, PP. 282-284.

ପୁଷ୍ପଗିରି ବୌଦ୍ଧବିହାର ବା ବିଶ୍ୱବିଦ୍ୟାଳୟ ଥିଲା । ପାରଳ-ଖେମଣ୍ଡି ଅନ୍ତର୍ଗତ ଚମତ୍କାରଣୀ ପ୍ରାକୃତିକ ଶୋଭା ବିଶିଷ୍ଟ ନଦନଦୀ ଓ ଅରଣ୍ୟ ମଧ୍ୟରେ ପାରଳାଖେମଣ୍ଡି ସହରରୁ ୧୯ ମାଇଲ ଦୂରରେ ଦକ୍ଷିଣପୂର୍ବ ଦିଗରେ ପୋଟ୍‌ପାଙ୍ଗି ଗ୍ରାମ ଅଛି । ଏହା ପୋପାଙ୍ଗି ବା ପୋପ୍‌ପାଙ୍ଗି (ପୋପଙ୍ଗିକା ବା ପୁଷ୍ପାଙ୍ଗି) ଦେବେନ୍ଦ୍ରବର୍ମାଙ୍କ ୧୮୩ ଗଙ୍ଗାବ୍ଦ ତାମ୍ରଶାସନରେ * ବର୍ଣ୍ଣିତ ହୋଇଛି ।

ଆଧୁନିକ ମହେନ୍ଦ୍ର ପାହାଡ଼ର ରମଣୀୟ ଉପତ୍ୟକା ମଧ୍ୟରେ ଦେଖାଯାଏ ପୁଷ୍ପଗିରି ବିହାରର ଧ୍ୱଂସାବଶେଷ, ଧ୍ୱଂସାବଶେଷ ନିକଟରେ ଏକ ଗ୍ରାମ ଓ ଟିଳିକଟରେ ଏକ ପାଇକ ବା ପ୍ରହରୀର ମୂର୍ତ୍ତି § ।

(୨) କନଗର—ଗ୍ରୀକ୍ ଲେଖକ 'କୋଣନଗର', 'କୋଣନଗର'କୁ କହନ୍ତି 'କନଗର' ବୋଲି । ତାଙ୍କ ବର୍ଣ୍ଣନା ଅନୁସାରେ ଏହା 'ମନଦ' (ମହାନଦୀ) ମୁହାଣରେ ଥିଲା । ଅର୍ଥାତ୍ ପ୍ରାଚୀ, କୁଶଭଦ୍ରା (ବା ଚନ୍ଦ୍ରଭାଗା) ସେତେବେଳେ ମହାନଦୀର ଏକ ପ୍ରଧାନ ସ୍ରୋତ ଥିଲା । ଚନ୍ଦ୍ରଭାଗା ସେତେବେଳେ ଓଡ଼ିଆର ସର୍ବଶ୍ରେଷ୍ଠ ତୀର୍ଥ ଥିଲା । ସେଠାରେ ଏକ ପ୍ରଶସ୍ତ ନଗର, ବନ୍ଦର ଓ ପୋତାଶ୍ରୟ ରହିଥିଲା । ବାଲୁକା ପ୍ରାନ୍ତର ଉପରେ କୋଣାର୍କ ମନ୍ଦିର ନିର୍ମିତ ହୋଇ ନ ଥିଲା । ବାଲୁକା

* Epigraphia Indica, III, PP. 130-134.
§ The Journal of the Orissa Academy, Vol, II, No. 1, Page 71.

ବଣି ପରବର୍ତ୍ତୀ କାଳରେ ସହର ଚତୁର୍ଦ୍ଦିଗରେ ଜମା ହୋଇ ଯାଇଅଛି ।

(୭) ତାମଲିପ୍ତ — ମେଦିନୀପୁର ଜିଲ୍ଲାର ତାମ୍ରଲିପ୍ତି ବର୍ଣ୍ଣିତ ହୋଇଛି ତାମଲିପ୍ତ ନାମରେ । ଏହା ଦାମୋଦର ଓ ରୂପ-ନାରାୟଣ ନଦୀଦ୍ୱୟର ସଙ୍ଗମ ନିକଟରେ ଅବସ୍ଥିତ ଥିଲା । ନଦୀର ଗତି-ପରିବର୍ତ୍ତନ ଏବଂ ବାଲୁକା ସଞ୍ଚୟ ଫଳରେ ତାମ୍ରଲିପ୍ତି ଏବେ ସମୁଦ୍ରକୂଳରୁ ଭୂମଧ୍ୟକୁ ଦୂରକୁ ହଟିଯାଇଛି । ଆନ୍ତର୍ଦ୍ଦେଶିକ ଓ ସାମୁଦ୍ରିକ ବାଣିଜ୍ୟ ଯୋଗୁଁ ତାମ୍ରଲିପ୍ତି ଏକ ପ୍ରସିଦ୍ଧ ବନ୍ଦର ଓ ପୋତାଶ୍ରୟ ହୋଇଥିଲା । ଭାରତ ସଙ୍ଗେ ଚୀନ ଓ ସୁବର୍ଣ୍ଣଦ୍ୱୀପର ବାଣିଜ୍ୟ ଏଠାରୁ ଚାଲୁଥିଲା । ଫାହିୟାଂ ଓ ଅନ୍ୟାନ୍ୟ ଚୀନ ପରିବ୍ରାଜକମାନେ ତାମ୍ରଲିପ୍ତି ବନ୍ଦର ବାଟେ * ଯିବାଆସିବା କରିଥିଲେ ।

(୮) ଦୋସର—ଐତିହାସିକ ୟୁଲ୍ (Yule) କହନ୍ତି ଯେ ଦୋସର କୋଶଳ ଦେଶରେ ମହାନଦୀ କୂଳରେ ଥିଲା । ଏହା ଆଧୁନିକ ବଲାଙ୍ଗିର-ପାଟଣା ଜିଲ୍ଲାର ସୋନପୁର ସହର । ସୋନପୁର ଏକ ପ୍ରାଚୀନ ସହର ଓ ବାଣିଜ୍ୟପୀଠ ଥିଲା । ତେଲନଦୀ ବାଟେ ଏବଂ ତେଲନଦୀରୁ ମହାନଦୀ ବାଟେ ଏହି ସୋନପୁରର ବାଣିଜ୍ୟ

* Periplus of the Erythrean Sea ର ବର୍ଣ୍ଣନା ଅନୁସାରେ ଗଙ୍ଗାମୁହାଣ ନିକଟରେ ତାମ୍ରଲିପ୍ତି ଏକ ବିଶାଳ ବାଣିଜ୍ୟ ବନ୍ଦର ଥିଲା । ସେଠାରୁ ଅତି ସୁନ୍ଦର ସୂକ୍ଷ୍ମ ବସ୍ତ୍ର ରପ୍ତାନି ହେଉଥିଲା । ଫାହିୟାଂ ଏଠାରୁ ସିଂହଳକୁ ଯାଇଥିଲେ । ସେ କହନ୍ତି ଯେ ତାମ୍ରଲିପ୍ତିରେ ଚବିଶ ଗୋଟି ସଙ୍ଘାରାମ ଥିଲା ।

ବନମପୁ ଚଲିକାର ପାଲୁର ଏବଂ ଓଡ଼ିଶାର ଅନ୍ୟାନ୍ୟ ବନ୍ଦର ପର୍ଯ୍ୟନ୍ତ ଗ୍ଭଲୁଥିଲା ।

(୯) ତୋଷଲଇ—ତୋଷଲର କଳିଙ୍ଗର ରାଜଧାନୀ ତୋଷାଳି । ଏହା କୁଶଭଦ୍ରା (କୁଶଭଦ୍ରାଗଙ୍ଗା = କୁଶଗଙ୍ଗା = କୋଟଗଙ୍ଗା) ନଦୀ କୂଳରେ ଥିଲା । କୁଶଭଦ୍ରା ନଦୀ କଳିଙ୍ଗରେ ଗଙ୍ଗାପରି ପବିତ୍ର ଓ ଅର୍ଚ୍ଚିତ ଥିଲା ।

(୧୦) ମନଦ—ମହାନଦୀ ବା ମହାନଦକୁ ଟଲେମି 'ମନଦ' ବୋଲି କହିଛନ୍ତି ।

(୧୧) ଆଦାମସ—ବୈତରଣୀ ମୁହାଣ ଧାମରାର ପ୍ରାଚୀନ ନାମ ଧାମ ବା ଧାମା (?) ଥିଲା । ଏଠାରେ ଏକ ପ୍ରାଚୀନ ନଗର ଓ ପୋତାଶ୍ରୟ ଥିଲା । ସାଳନ୍ଦୀ, ବ୍ରାହ୍ମଣୀ ଓ ବୈତରଣୀର ବନ୍ୟାରେ ନଗରଟି ଧ୍ୱଂସ ପାଇଛି । 'ପୁରୀ' ନାମ ପୂର୍ବେ ନ ଥିଲା । ତାହାକୁ ପୁରୁଷୋତ୍ତମ ଧାମ ବା ଖାଲି 'ଧାମ' ବୋଲି କହୁଥିଲେ ଟଲେମି ଧାମକୁ ଆଦାମସ ବୋଲି କହିଛନ୍ତି । ତାଙ୍କ ବର୍ଣ୍ଣିତ 'ଆଦାମସ' ଏହି ପୁରୀ କିମ୍ବା ଧାମରାରୁ କୌଣସିଏ ହୋଇଥିବାର ଅନୁମାନ କରାଯାଏ । ହୁଏନସାଂ ଏହି ପୁରୀକୁ 'ଶ୍ରୀକ୍ଷେତ୍ର' (ଚାଲିତ୍ରଲ) ବୋଲି କହନ୍ତି । ବ୍ରହ୍ମଦେଶର ପ୍ରୋମ୍ ସହରର ପ୍ରାଚୀନ ନାମ 'ଶ୍ରୀକ୍ଷେତ୍ର' । ଚୀନ ପରିବ୍ରାଜକମାନେ ପ୍ରୋମକୁ ମଧ୍ୟ 'ଚାଲିଚେତ୍ରଲ' * ବୋଲି କହିଛନ୍ତି ।

* କେତେକ ବିଦ୍ୱାନଙ୍କର 'ଚେଲିତୋଲ' (ଗୃହପ) ବନ୍ଦର ଥିବାର ଉକ୍ତି ପ୍ରମାଦଗ୍ରସ୍ତ ଅଟେ ।

(୧୨) କୋକ୍‌କନୋଗାର—କୋକ୍‌କନୋଗୋର ମଧ୍ୟ ହେଉଛି କୋଣାର୍କ ନଗର ।

ଟଲେମିଙ୍କ ବର୍ଣ୍ଣିତ ଏହି ବାରହିଯାକ ନଗର, ନଦୀ ବା ବନ୍ଦର ହୁଗ୍ଲୀ ଓ ଗୋଦାବରୀ ନଦୀଦ୍ୱୟର ଅନ୍ତର୍ବର୍ତ୍ତୀ ପ୍ରଦେଶରେ ଅବସ୍ଥିତ ରହିଥିଲା ।

କଳିଙ୍ଗର ସମସ୍ତ ପ୍ରଶସ୍ତ ଓ ପ୍ରସିଦ୍ଧ ବନ୍ଦରମାନଙ୍କରୁ ବହୁଳ ବାଣିଜ୍ୟସ୍ରୋତ ଚାଲୁଥିଲା ପାରେସମୁଦ୍ର ଅଞ୍ଚଳକୁ ଅର୍ଥାତ୍ ସିଂହଳ, ବ୍ୟାଘ୍ରତଟ ଓ ସମତଟ, ବ୍ରହ୍ମଦେଶ, ଶ୍ୟାମ, ସୁବର୍ଣ୍ଣଦ୍ୱୀପ (ଯବ, ସୁମାତ୍ରା, ବାଲି, ବୋର୍ଣ୍ଣିଓ) ଏବଂ ଚୀନକୁ । ଐତିହାସିକ ରାଖାଲ ଦାସ ବନ୍ଦ୍ୟୋପାଧ୍ୟାୟ କହନ୍ତି, କଳିଙ୍ଗମାନେ ଆଫ୍ରିକାର ଉପକୂଳ ଅଞ୍ଚଳ ଓ ଆମେରିକାର ପେରୁମେକ୍‌ସିକୋ ସଙ୍ଗେ ସାମୁଦ୍ରିକ ବାଣିଜ୍ୟସମ୍ପର୍କ ରଖିଥିଲେ । ଆମେରିକାର ମାୟା ସଭ୍ୟତା ଭାରତୀୟ ବା କଳିଙ୍ଗୀୟ ବାଣିଜ୍ୟର ପରିଣାମ ବୋଲି ଅନୁମାନ କରାଯାଏ ।

ଇଂରେଜମାନଙ୍କର ଭାରତ ଆଗମନ ପର୍ଯ୍ୟନ୍ତ କଳିଙ୍ଗର ଏହି ବୋଇତ ବାଣିଜ୍ୟ ପ୍ରଚେଷ୍ଟା ଚାଲିଥିଲା । ମୁସଲମାନ ଓ ମୋଗଲ ସମ୍ରାଟ୍‌ମାନେ ଅତ୍ୟଧିକ ପରିମାଣରେ ବାଣିଜ୍ୟ ଶୁଳ୍କ ଆଦାୟ କରୁଥିଲେ । ଷୋଡ଼ଶ ଶତକରେ ହୋଲାଣ୍ଡୀୟ ଫିରିଙ୍ଗି ଓ ପର୍ତ୍ତୁଗୀଜମାନଙ୍କର ଉପକୂଳ ଅଞ୍ଚଳର ଉପଦ୍ରବରୁ ଦେଶର ବଣିକ-ମାନଙ୍କୁ ରକ୍ଷା କରିବା ନିମନ୍ତେ ମାସକୁ ତିରିଶ ହଜାର ଟଙ୍କା ରାଜସ୍ୱ ବିନିଯୋଗ କରି ଏକ ନୌବାହିନୀ ବା ପୋତବାହିନୀ ଗଠନ କରିଥିଲେ । ଏହି ଅତ୍ୟଧିକ ଶୁଳ୍କ ପରିମାଣ ଏବଂ ଫିରିଙ୍ଗି

ଉପଦ୍ରବ ହେତୁ କଳିଙ୍ଗର ବାଣିଜ୍ୟ ପ୍ରସଙ୍ଗ କ୍ରମେ ଧ୍ୱଂସମୁଖୀ ହେବାକୁ ବସିଲା ।

ମହାରାଷ୍ଟ୍ରମାନେ ଦେଶରେ ଅରାଜକତା ଓ ଲୁଣ୍ଠନ ପ୍ରସାର କଲେ । ଧନ ସଂଗ୍ରହ ଏକ ବିପଦର କାରଣ ହୋଇ ପଡ଼ିଲା । ଶାନ୍ତି ଶୃଙ୍ଖଳାର ଅଭାବ ବାଣିଜ୍ୟ ପ୍ରୟାସରେ ବ୍ୟାଘାତ ଜନ୍ମାଇଲା । କଳିଙ୍ଗବାସୀ ସମ୍ପୂର୍ଣ୍ଣରୂପେ ବାଣିଜ୍ୟ ପ୍ରଚେଷ୍ଟା ପରିତ୍ୟାଗ କଲେ ।

ବିଦେଶାଗତ ଜାତିମାନେ ଏହି ସୁଯୋଗରେ ଭାରତର ଓ କଳିଙ୍ଗର ବାଣିଜ୍ୟ ହାତ କରିନେଲେ । ବାଲେଶ୍ୱର ଜିଲ୍ଲାର ଉପକୂଳରେ ପିପିଳି, ବାଲେଶ୍ୱର, ସାତ୍ରିଥ, ଗୁମୁସ୍ତା, ଲକ୍ଷଣପୁର, ଚୁଡ଼ାମଣି ଓ ଧାମରାରେ ନୂତନ ବନ୍ଦର ଓ ବାଣିଜ୍ୟ କୋଠି ସ୍ଥାପିତ ହେଲା ।

ବିଦେଶାଗତ ଜାତିମାନେ ପୋତନିର୍ମାଣରେ ପ୍ରବୀଣ ନ ଥିଲେ । ସେମାନେ ଏହି କାମରେ କଳିଙ୍ଗବାସୀମାନଙ୍କୁ ନିଯୁକ୍ତ କରୁଥିଲେ । କଳିଙ୍ଗ ଜାତିର ପ୍ରାଚୀନ ବାଣିଜ୍ୟ-ସୌକର୍ଯ୍ୟ-ଗରିମାର ଅବଶେଷ ମାତ୍ର ରହିଲା କେବଳ ସ୍ୱଦେଶୀ ପୋତନିର୍ମାଣ-ପାରଦର୍ଶିତା ପ୍ରଦର୍ଶନରେ ।



( ୪ )

# କଳିଙ୍ଗ ଯୁଦ୍ଧ

ଖ୍ରୀଷ୍ଟପୂର୍ବ ୩୨୬ ରେ ପୃଥ୍ୱୀବିଜେତା ସିକନ୍ଦର ଯେତେବେଳେ ପଞ୍ଚନଦ ପ୍ରଦେଶରେ ବଜାନ୍ତି ରଣଦୁନ୍ଦୁଭି, ସେତେବେଳେ ଭାରତ ଏକ ମହତ୍ କୃତ୍ତ୍ୱର ସମ୍ମୁଖୀନ ହୁଏ । ତକ୍ଷଶିଳାର ଅସାମାନ୍ୟ ପ୍ରତିଭାସମ୍ପନ୍ନ ବ୍ରାହ୍ମଣ ଚାଣକ୍ୟ କୌଟିଲ୍ୟ ମାତୃଭୂମିର ଉଦ୍ଧାର ନିମନ୍ତେ ନେତୃତ୍ୱ ନିଅନ୍ତି । ପଞ୍ଜାବରେ ବିଦ୍ରୋହ ପରେ ବିଦ୍ରୋହ, ଷଡ଼ଯନ୍ତ୍ର ପରେ ଷଡ଼ଯନ୍ତ୍ର ଦେଖା ଦେଲା । ଖ୍ରୀଷ୍ଟପୂର୍ବ ୩୨୩ ରେ ସିକନ୍ଦରଙ୍କ ନିଯୁକ୍ତ ପଶ୍ଚିମ ପଞ୍ଜାବର କ୍ଷତ୍ରପ ଫିଲିପ୍ସ ଷଡ଼ଯନ୍ତ୍ରରେ ନିହତ ହେଲେ ।

କିନ୍ତୁ ସେଥିରେ ଗ୍ରୀକ୍‌ମାନେ ଭାରତ ଛାଡ଼ି ଚାଲିଯିବାର ପାତ୍ର ନ ଥିଲେ । ଫିଲିପ୍ସଙ୍କ ପରେ ୟୁଡେମସ୍ ପଶ୍ଚିମ ପଞ୍ଜାବର କ୍ଷତ୍ରପ ରୂପେ ନିଯୁକ୍ତ ହୋଇଥିଲେ ।

ରାପ୍ତୀ ଓ ଗଣ୍ଡକୀ ନଦୀ ମଧ୍ୟରେ ଗୋରଖପୁର ଜିଲ୍ଲାର ଉତ୍ତରକୁ ପିପ୍ପଲୀବନ ନାମରେ ଏକ ଗଣତନ୍ତ୍ର ରାଜ୍ୟ ଥିଲା । ସେହି ଗଣତନ୍ତ୍ର ରାଜ୍ୟରେ ସୂର୍ଯ୍ୟବଂଶୀୟ ମୌର୍ଯ୍ୟ କ୍ଷତ୍ରିୟମାନେ ଶାସକ ଥିଲେ । ସେହି ମୌର୍ଯ୍ୟବଂଶରେ ଚନ୍ଦ୍ରଗୁପ୍ତ ସିକନ୍ଦରଙ୍କ ଯୁଦ୍ଧ-ଶିବିରକୁ ଯାଇ ଗ୍ରୀକ୍ ଯୁଦ୍ଧ ପ୍ରଣାଳୀ ଶିକ୍ଷା କରୁଥିଲେ । ତାଙ୍କ ଗର୍ବିତ ଉତ୍ତରରେ କ୍ଷୁବ୍ଧ ସିକନ୍ଦର ତାଙ୍କୁ ପ୍ରାଣଦଣ୍ଡାଦେଶ ଦେବାରୁ ଚନ୍ଦ୍ରଗୁପ୍ତ ବନ୍ଧ୍ୟାଟବୀକୁ ପଳାୟନ କଲେ । ବନ୍ଧ୍ୟାଟବୀରେ ସେ ଥରେ ଗୋଟିଏ ସିଂହ ସଙ୍ଗେ ଏବଂ ଆଉ ଥରେ ଗୋଟିଏ ହସ୍ତୀ ସଙ୍ଗେ ଯୁଦ୍ଧଦ୍ୱାରା ନିଜ ପ୍ରାଣ ରକ୍ଷା କରିଥିଲେ । ଏ ପ୍ରକାର ଶାରୀରିକ ବଳ-ସମ୍ପନ୍ନ ବୀରଙ୍କ ମନର ତେଜ ଓ ଓଜଃ କେବଳ କଳ୍ପନାର ବିଷୟ ହୁଏ । ବନ୍ଧ୍ୟାଟବୀରେ ଚନ୍ଦ୍ରଗୁପ୍ତ ଓ ଚାଣକ୍ୟଙ୍କର ମିଳନ ଘଟେ ।

ବନ୍ଧ୍ୟାଟବୀର ପାର୍ବତ୍ୟ ଜାତିମାନଙ୍କୁ ବଶୀଭୂତ କରି ଏବଂ ପଶ୍ଚିମ ଭାରତୀୟ ଜନତାର ସାହଚର୍ଯ୍ୟ ଲାଭ କରି ଚନ୍ଦ୍ରଗୁପ୍ତ ଓ ଚାଣକ୍ୟ ଗ୍ରୀକ୍‌ମାନଙ୍କୁ ପଞ୍ଜାବରୁ ତଡ଼ିଦେଲେ । ଚନ୍ଦ୍ରଗୁପ୍ତ ଖ୍ରୀଷ୍ଟପୂର୍ବ ୩୨୪ ରେ ନିଜକୁ ପଞ୍ଜାବର ରାଜା ବୋଲି ଘୋଷଣା କଲେ । ଗ୍ରୀକ୍ କ୍ଷତ୍ରପ ଫିଲିପ୍‌ସ ଖ୍ରୀଷ୍ଟପୂର୍ବ ୩୨୩ ରେ ଷଡ଼ଯନ୍ତ୍ରରେ ନିହତ ହେଲେ । ଖ୍ରୀଷ୍ଟପୂର୍ବ ୩୨୧ ବେଳକୁ ଗ୍ରୀକ୍‌ମାନେ ସମଗ୍ର ପଞ୍ଜାବ ଓ ସିନ୍ଧୁରୁ ସମସ୍ତ କ୍ଷମତା ହରାଇଲେ । ଚନ୍ଦ୍ରଗୁପ୍ତ ସମଗ୍ର ପଞ୍ଜାବ ଓ ସିନ୍ଧୁ ଶାସନ କଲେ । କୌଟିଲ୍ୟ ତାଙ୍କର ମନ୍ତ୍ରୀ ରୂପେ ନିଯୁକ୍ତ ହେଲେ ।

ଚନ୍ଦ୍ରଗୁପ୍ତ ପଞ୍ଜାବରୁ ମଗଧ ଆକ୍ରମଣ କଲେ । ନନ୍ଦ ସେନାପତି ଭଦ୍ରଶାଳ ପରାସ୍ତ ହେଲେ ଏବଂ ନନ୍ଦସେନା ଧ୍ୱଂସ ପାଇଲା ।

ପାଟଳିପୁତ୍ର ଚନ୍ଦ୍ରଗୁପ୍ତଙ୍କ ହସ୍ତଗତ ହେଲା । ଖ୍ରୀଷ୍ଟପୂର୍ବ ୩୧୩ ରେ ଚନ୍ଦ୍ରଗୁପ୍ତ ଅବନ୍ତୀ ଓ ସୌରାଷ୍ଟ୍ର ଅଧିକାର କଲେ । ପୁଷ୍ୟଗୁପ୍ତ ବୈଶ୍ୟ ତହିଁର ରାଷ୍ଟ୍ରୀୟ ବା ଶାସନକର୍ତ୍ତା ନିଯୁକ୍ତ ହେଲେ ।

ସିକନ୍ଦରଙ୍କ ସେନାପତି ସିଲ୍ୟୁକସ ନିଜ ରାଜଧାନୀ ବେବିଲନଠାରୁ ଆଉ ଥରେ ପଞ୍ଜାବ ଜୟ କରିବାର ଚେଷ୍ଟା କଲେ । ସେ ଖ୍ରୀଷ୍ଟପୂର୍ବ ୩୦୫ ରେ ଚନ୍ଦ୍ରଗୁପ୍ତଙ୍କ ଦ୍ୱାରା ପରାଜିତ ହୋଇ ତାଙ୍କୁ ଛାଡ଼ିଦେଲେ କାବୁଲ, କାନ୍ଦାହାର, ହେରାତ୍ ଓ ବେଲୁଚିସ୍ଥାନ । ଏହି ଘଟନାର ପାଞ୍ଚ ବର୍ଷ ପରେ ଚନ୍ଦ୍ରଗୁପ୍ତଙ୍କର ମୃତ୍ୟୁ ହୁଏ । ଫଳରେ ଚନ୍ଦ୍ରଗୁପ୍ତ ଖ୍ରୀଷ୍ଟପୂର୍ବ ୩୨୪ ରୁ ୩୦୦ ଅବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରନ୍ତି ।

ଚନ୍ଦ୍ରଗୁପ୍ତଙ୍କ ପୁତ୍ର ବିନ୍ଦୁସାର ସମ୍ଭବତଃ ନିଜ ସାମ୍ରାଜ୍ୟ ବିନ୍ଧ୍ୟରୁ ମହୀସୁର ପ୍ରଦେଶର ଶୀତଳ ଦୁର୍ଗ ଜିଲ୍ଲା ବା ପେନାର ନଦୀ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । କଳିଙ୍ଗ ଓ କାମରୂପ ମୌର୍ଯ୍ୟ ସାମ୍ରାଜ୍ୟର ବାହାରେ ରହିଥିଲା ।

ଭାଗ୍ୟ ପରିରେ ଶିକାରୀ ବେଶରେ ଦୌଡ଼ିବାକୁ ଯେଉଁ ଚନ୍ଦ୍ରଗୁପ୍ତ ସିକନ୍ଦରଙ୍କ ଶିବିରରେ ଯୁଦ୍ଧଶିକ୍ଷା କରୁଥିଲେ, ପ୍ରାଣଦଣ୍ଡାଦେଶ ଏଡ଼ିବାକୁ ଯେ ବିନ୍ଧ୍ୟାଟବୀକୁ ପଳାୟନ କରିଥିଲେ, ସିଂହ ଓ ହସ୍ତୀ ସଙ୍ଗେ ଯୁଦ୍ଧ କରି ଯେ ପ୍ରାଣରକ୍ଷା କରିଥିଲେ, ସହାୟ ସମ୍ବଳହୀନ ଅବସ୍ଥାରେ ଯେ ଗ୍ରୀକ୍‌ମାନଙ୍କୁ ତଡ଼ି ପାରିଥିଲେ ଏବଂ ଚକ୍ରବର୍ତ୍ତୀ ନନ୍ଦଙ୍କୁ ଜିଣି ପାରିଥିଲେ, ଅସାମାନ୍ୟ ରାଜନୀତିବିଶାରଦ କୌଟିଲ୍ୟ ଯାହାର ମନ୍ତ୍ରଣାଦାତା, ସେହି ଚନ୍ଦ୍ରଗୁପ୍ତ କଳିଙ୍ଗ ଆକ୍ରମଣ କରିବାକୁ ସାହସ କରି ନ ଥିଲେ । ହିମାଳୟଠାରୁ ପେନାର ପର୍ଯ୍ୟନ୍ତ ସମଗ୍ର

ଅଞ୍ଚଳ ପରଗୃହୀତ ହେଉଥିଲା ଯାହାର ଭ୍ରୂକୁଟିନିର୍ଦ୍ଦେଶରେ, ସେହି ବନ୍ଦୁଆର ଷଣ୍ଡ ରହିଥିଲେ କଳିଙ୍ଗ ଆକ୍ରମଣରୁ । କଳିଙ୍ଗ ଥିଲା ଏକ ପରାକ୍ରାନ୍ତ ରାଷ୍ଟ୍ର । ଖ୍ରୀଷ୍ଟପୂର୍ବ ୩୨୭ରେ ସିକନ୍ଦର ପୂର୍ବାଭିମୁଖୀ କୂଳର ପ୍ରାଚୀ ଓ ଗଙ୍ଗାରାଇଡ଼ କଳିଙ୍ଗର ପରାକ୍ରମ କାହାଣୀ କଥା ଶୁଣି ପାଇଥିଲେ ।

ମେଗାସ୍ଥିନିସ ପ୍ରାଚୀକଳିଙ୍ଗ ଓ ଗଙ୍ଗାରାଇଡ଼ କଳିଙ୍ଗକୁ ଗୋଟିଏ ରାଷ୍ଟ୍ର ବୋଲି ବର୍ଣ୍ଣନା କରିଛନ୍ତି । ପଦ୍ମାନଦୀ ଗଙ୍ଗାରାଇଡ଼ କଳିଙ୍ଗର ପୂର୍ବ ସୀମା ଥିଲା । ଗୋଦାବରୀ ନଦୀ ପ୍ରାଚୀକଳିଙ୍ଗର ଦକ୍ଷିଣ ସୀମା ଥିଲା । ଗଙ୍ଗାରାଇଡ଼ କଳିଙ୍ଗରେ ଜଣେ ଶାସନକର୍ତ୍ତା ରହୁଥିଲେ । ବ୍ୟାଘ୍ରତଟ (ସୁନ୍ଦରବଣ) ସମତଟ (ଚଟ୍ଟଗ୍ରାମ ପ୍ରଦେଶ), ଆରାକାନ ଓ ଦକ୍ଷିଣ ବ୍ରହ୍ମଦେଶ (ମଗକଳିଙ୍ଗ), ବାଲି, ଯବ, ସୁମାତ୍ରା ସମସ୍ତ କଳିଙ୍ଗ ସାମ୍ରାଜ୍ୟର ଅଧୀନ ଥିଲା * । ସାରେସମୁଦ୍ର ବାଣିଜ୍ୟରୁ କଳିଙ୍ଗମାନେ ପୁଷ୍କଳ ଧନ ଆଣୁଥିଲେ । ସେମାନେ ସେହି ସ୍ଥାନମାନଙ୍କରେ ଉପନିବେଶ ଓ ସଂସ୍କୃତି ସ୍ଥାପନ କରିଥିଲେ ।

* ଜନୈକ ତୀନ ପର୍ଯ୍ୟଟକ "ତାରନାଥ" (ତାଙ୍କ ସଂସ୍କୃତ ନାମ) ଖ୍ରୀଷ୍ଟ ଷୋଡ଼ଶ ଶତକରେ ସଂସ୍କୃତ ଶିକ୍ଷା ନିମନ୍ତେ ଭାରତକୁ ଆସିଥିଲେ । ତାଙ୍କ ଲିଖିତ "ମଗଧରାଜବଂଶ" ନାମକ ସଂସ୍କୃତ ଗ୍ରନ୍ଥରୁ ଜଣାଯାଏ ଯେ ଓଡ଼ିଶାର ରାଜା ଜାଲେନ୍ଦ୍ର ବଙ୍ଗଳାର ସୋମବଂଶୀୟ ରାଜା ଭୃଷଚନ୍ଦ୍ରଙ୍କ ହସ୍ତରୁ ପୂର୍ବବଙ୍ଗଳା ଦଖଲ କରି ନେଇଥିଲେ । ଏହି ରାଜାମାନେ ଏତେ ପ୍ରାଚୀନ ଯେ ଏ ବର୍ଣ୍ଣନାର ତଥ୍ୟ ନିରୂପଣ କରିବା ଦୁରୂହ ହୋଇପଡ଼ିଛି । (Taranath's Accounts—The Journal of the Department of Letters—Vol. 1—Calcutta University)

କଳିଙ୍ଗର ରାଜଧାନୀ ଏକ ଜନାକୀର୍ଣ୍ଣ ନଗର ଥିଲା । ଯାନ ଓ ଜନସମାଗମ ଭଡ଼ରେ ରାସ୍ତାରେ ଯିବା ଆସିବା କଷ୍ଟକର ଥିଲା । ରାସ୍ତାରେ ଯିବାବେଳେ ଲୋକଙ୍କର କାନ୍ଧକୁ କାନ୍ଧ, ଯାନମାନଙ୍କର ଚକର ଅଖକୁ ଅଖ ଘଷି ହୋଇଥିଲା । ପଥିକମାନେ ବାହୁ ଟେକି ଦେଲେ ଛତର ଗୁଡ଼ ଘର ଦେଖାଯାଉଥିଲା । ବୌଦ୍ଧ ଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ କୌଣସି କାରଣବଶତଃ କଳିଙ୍ଗର ଜନସଂଖ୍ୟା କମି ଯାଇଥିଲା । ଅନୁମାନ କରାଯାଏ, ଏହା ଉପନିବେଶ ସ୍ଥାପନ ହେତୁ * ଘଟିଥିଲା ।

ପ୍ରାଚୀନ ଭାରତର ବିଦର୍ଭ ରାଜ୍ୟ ଶୋଣଚମ୍ବଲଠାରୁ କୃଷ୍ଣା ପର୍ଯ୍ୟନ୍ତ ଏବଂ ମାଳବଠାରୁ ପୂର୍ବାମ୍ବୁଧି ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଦମଘୋଷ ଶିଶୁପାଳ ଚେଦୀ, ନଳଙ୍କ ଶ୍ୱଶୁର ଭୀମ ବିଦର୍ଭର ପୁରାଣକୀର୍ତ୍ତିତ ରାଜା ଥିଲେ । ପଦ୍ମପୁରାଣର ବର୍ଣ୍ଣନା ଅନୁସାରେ ବେଣଙ୍କ ପୁତ୍ର ପୃଥୁ ୧୩ ଜଣ ରାଜାଙ୍କୁ କଳିଙ୍ଗ ପ୍ରଦେଶ ଦାନ କରିଥିଲେ । ମହାପଦ୍ମ ନନ୍ଦ କଳିଙ୍ଗ ଆକ୍ରମଣ କରିବା ବେଳକୁ ୩୨ ଜଣ ରାଜା କଳିଙ୍ଗ ଶାସନ କରୁଥିଲେ । ମତ୍ସ୍ୟ ଓ ବାୟୁ ପୁରାଣରେ ବର୍ଣ୍ଣନା ଅନୁସାରେ ବୁଧଙ୍କ ପୁତ୍ର ପୁରୁରବାଙ୍କ ଔରସରେ ଇଳାଙ୍କ ଗର୍ଭରୁ ଜାତ ପୁତ୍ର ଉତ୍ତକ୍ଷୁ କଳିଙ୍ଗର ସ୍ଥାପନକର୍ତ୍ତା ଥିଲେ । ଏଥିରୁ ଆଭାସ ମିଳେ ଯେ ଚେଦୀ ବା ଐଳ ବଂଶୀୟ ସୋମ କ୍ଷତ୍ରିୟମାନେ ବିଦର୍ଭର ଏକ ଖଣ୍ଡରେ କଳିଙ୍ଗ ରାଜ୍ୟ ସ୍ଥାପନ କରିଥିଲେ ।

* Hieuen Tsang | Beale II, 170 and 208.

ଅଶୋକଙ୍କ କଳିଙ୍ଗ ଆକ୍ରମଣର ପ୍ରାକ୍‌କାଳରେ ଏହି ଚେଦୀ (ଚେତ) ବା ଐଳ (ଐର)ମାନେ କଳିଙ୍ଗର ଶାସନକର୍ତ୍ତା ଥିଲେ । ଖାରବେଳ ଚେତ ଏହି ବଂଶର ରାଜା । କଳିଙ୍ଗରେ ଅସଂଖ୍ୟ ରାଜା ଥିଲେ, ଅସଂଖ୍ୟ ରାଜଧାନୀ ଓ ଦୁର୍ଗନଗର ଥିଲା । ସମସ୍ତଙ୍କ ଉପରେ ଜଣେ ଚକ୍ରବର୍ତ୍ତୀ ଥିଲେ । ଚକ୍ରବର୍ତ୍ତୀଙ୍କ ରାଜଧାନୀ ପାର୍ଥାଲି ଥିଲା ।

ମେଗାସ୍ଥିନିସ କହନ୍ତି, "ମକ୍‌କ (ମଗ) କଳିଙ୍ଗମାନେ ସମୁଦ୍ର-ଉପାନ୍ତ କାଛ । ଗଙ୍ଗା ସେମାନଙ୍କର ସୀମାନ୍ତ ନଦୀ । ମଣ୍ଡ (ମଧ୍ୟ) କଳିଙ୍ଗମାନେ ଗଙ୍ଗା ମଧ୍ୟବର୍ତ୍ତୀ ଅଞ୍ଚଳର ଅଧିବାସୀ । ଗଙ୍ଗା ମୁହାଣରେ ଗଙ୍ଗାରାଇଡ଼ କଳିଙ୍ଗମାନେ ରହନ୍ତି । କଳିଙ୍ଗର ରାଜଧାନୀ ପାର୍ଥାଲି । ଛଅ ଅୟୁତ ପଦାତ, ହଜାରେ ଅଶ୍ୱାରୋହୀ, ସାତ ଶହ ହସ୍ତୀ ଯୁଦ୍ଧବେଳେ କଳିଙ୍ଗ ରାଜାଙ୍କୁ ରକ୍ଷା କରନ୍ତି ✻ ।"

ପ୍ଲିନି କହନ୍ତି, "କଳିଙ୍ଗ ଓ ଆନ୍ଧ୍ରର ମଧ୍ୟଭାଗ ପଶ୍ଚିମକୁ ମଦୁବା, ମଲଢ, ଉବେର, ଗଲମେଦ୍ର, ପ୍ରେତ, କଳିପି, ଶଣ୍ଡର, ପସଲି, କଲୁବ, ଅର୍କସଲି, ଅବଲି, ତୁଲକ୍ସ, ଅଟ୍ଟି, ଏହି ସମସ୍ତ ରାଜାଙ୍କର ପାଞ୍ଚ ଅୟୁତ ପଦାତ, ଚାରି ହଜାର ଅଶ୍ୱ ଓ ଚାରିଶହ ହସ୍ତୀ ଅଛନ୍ତି * ।"

✻ Ancient India—Megasthenes and Arrian—P. 136. M'Crindle.

* Pliny—ଖ୍ରୀଷ୍ଟ ପ୍ରଥମ ଶତକ ।

ମେଗାସ୍ଥିନିସ ଓ ପ୍ଲିନିଙ୍କ ବିବରଣରୁ ସ୍ପଷ୍ଟ ଜଣାଯାଏ ଯେ କଳିଙ୍ଗ ଅନେକଗୁଡ଼ିଏ ରାଜ୍ୟର ସମଷ୍ଟି ଥିଲା । ମେଗାସ୍ଥିନିସ ବର୍ଣ୍ଣନା କରିଛନ୍ତି ପ୍ରାଚୀ କଳିଙ୍ଗ ଗଙ୍ଗାରିଡ଼ି କଳିଙ୍ଗ ଓ ମଗ କଳିଙ୍ଗ । ପ୍ଲିନିଙ୍କ ବର୍ଣ୍ଣନା କୋଶଳର ସୂଚନା ଦିଏ । ସମ୍ଭବତଃ କୋଶଳ ସ୍ୱତନ୍ତ୍ର (ଭ୍ରାତୃ) ରାଜ୍ୟ ଥିଲା ଏବଂ ସେଠାରେ ଜଣେ କଳିଙ୍ଗ ରାଜବଂଶୀୟ ଶାସନକର୍ତ୍ତା ଥିଲେ । କଳିଙ୍ଗର ଯେପରି ଥିଲା ବିଶାଳ ସେନା, କୋଶଳର ସେହିପରି ଥିଲା ବିଶାଳ ସେନା । ଯୁଦ୍ଧବେଳେ ସମଗ୍ର ସେନାର ସମାବେଶ ଓ ବିନିଯୋଗ ହୋଇଥିଲା ।

ଅଶୋକ ପ୍ରତିବେଶୀ କଳିଙ୍ଗ ରାଜ୍ୟକୁ ମଗଧ ସାମ୍ରାଜ୍ୟର ଗୋଟିଏ କଣ୍ଟକ ଓ ବିପତ୍ତିର କାରଣ ବୋଲି ବୁଝିଥିଲେ । ସେ ଜାଣିଥିଲେ କଳିଙ୍ଗ ବିଜୟରେ ମଗଧର ଧନ ଓ ଗୌରବ, ମଗଧର ପ୍ରତିପତ୍ତି ଦ୍ୱିଗୁଣିତ ହୋଇଯିବ । ତେଣୁ ସେ କଳିଙ୍ଗ ବିଜୟ ସକାଶେ ପ୍ରବଳ ଆୟୋଜନ କଲେ । ମଗଧର ବିଶାଳ ସେନା ଓ ଯୁଦ୍ଧଶକ୍ତି ପ୍ରସ୍ତୁତ ହେଲା କଳିଙ୍ଗ ବିପକ୍ଷରେ ।

ମଗଧ ସେନା ଯେତେବେଳେ ଚାଲିଲା କଳିଙ୍ଗ ବିପକ୍ଷରେ ବୋଧହେଲା ହିମାଦ୍ରି ସ୍ଥାନଚ୍ୟୁତ ହୋଇ ଜଙ୍ଗମ ରୂପ ଧରିଛି, କିମ୍ବା ମହୋଦଧି ମଗଧରୁ ବାହାରି ଚାଲିଛି କଳିଙ୍ଗ ଉପରେ ଲହରି ପଛରେ ଲହରି ଅଜାଡ଼ି ଦେବାକୁ । ମଗଧ ସେନାର ଛଅ ଲକ୍ଷ ପଦାତି, ତିରିଶ ହଜାର ଅଶ୍ୱ, ନଅ ହଜାର ହସ୍ତୀ ଓ ଅସଂଖ୍ୟ ରଥ କଳିଙ୍ଗବିଜୟ ପାଇଁ ଚାଲିତ ହେଲା । ଯୁଦ୍ଧ ସାମଗ୍ରୀ ଖାଦ୍ୟ ସାମଗ୍ରୀ ପ୍ରଭୃତି ବୋହିନେବା ନିମନ୍ତେ, ସୈନିକମାନଙ୍କର ସେବା ଶୁଶ୍ରୂଷା କରିବା ନିମନ୍ତେ ନିଶ୍ଚୟ ସୈନ୍ୟର ଦୁଇ ଗୁଣ ଶିବିରଚାରୀ

ଭୃତ୍ୟ ଥିଲେ । ଅଳ୍ପ କଥାରେ ପ୍ରାୟ କୋଡ଼ିଏ ଲକ୍ଷ ମଗଧ ଥାଟ ଦୌଡ଼ିଲ କଳିଙ୍ଗର ସ୍ୱାଧୀନତା ଅପହରଣ ନିମନ୍ତେ : ଥାଟର ନିୟନ୍ତା ସ୍ୱୟଂ ମଗଧସମ୍ରାଟ୍ ଅଶୋକବର୍ଦ୍ଧନ ମୌର୍ଯ୍ୟ ।

ଏତେ ବିଶାଳ ଆୟୋଜନ ଦେଖି କଳିଙ୍ଗ ତସ୍ତ ହେବାର ରାସ୍ତା ନ ଥିଲ । ତାହାର ଥିଲ ତାରେସମୁଦ୍ର ସାମ୍ରାଜ୍ୟ ଓ ବାଣିଜ୍ୟ ଯୁଦ୍ଧ ପାଇଁ ଧନ ଯୋଗାଇବାକୁ; ଥିଲ ବିଶାଳ ଭୂପ୍ରଦେଶ ଜନ ଯୋଗାଇବାକୁ; ଥିଲ ସହସ୍ର ସହସ୍ର ଦୁର୍ଗ ମଗଧକୁ ଅଟ୍ଟା କରିବାକୁ; ଥିଲେ ଅସଂଖ୍ୟ ସୈନ୍ୟ ଶତ୍ରୁଙ୍କୁ ହଟାଇ ଦେବାକୁ କିମ୍ବା ଶତ୍ରୁର ଶାଣିତ କୃପାଣରେ ଆତ୍ମବଳି ଦେବାକୁ । ଦୁର୍ଗ ପଛକୁ ଦୁର୍ଗ ସଜ୍ଜିତ ରହିଲ ସୈନ୍ୟ ଯୁଦ୍ଧ ସାମଗ୍ରୀ ନେଇ । ବ୍ୟକ୍ତି ସଙ୍ଗେ ବ୍ୟକ୍ତି ହାତ ମିଳାଇ ପ୍ରତିଜ୍ଞା କଲେ ମାତୃଭୂମିର ମାନ ରକ୍ଷା କରିବେ ବୋଲି । ସାମନ୍ତ ପଛରେ ସାମନ୍ତ ତାଳିକୁ ତାଳି ମିଳାଇ ଠିଆ ହେଲେ କଳିଙ୍ଗର ପତାକା ତଳେ ରାଷ୍ଟ୍ରର ସ୍ୱାଧୀନତା ବଜାୟ ରଖିବେ ବୋଲି । ପିଲଖେଳ କଥା ନୁହେ କଳିଙ୍ଗ ବିଜୟ ବୋଲି ଦେଖାଇ-ଦେବାକୁ କଳିଙ୍ଗର ଆବାଳବୃଦ୍ଧବନିତା ପ୍ରସ୍ତୁତ ହେଲେ । ଜଣେ କଳିଙ୍ଗବାରର ଗୋଟିଏ ଖଣ୍ଡା ଥିବା ପର୍ଯ୍ୟନ୍ତ ମଗଧ କଳିଙ୍ଗ ନେଇ ପାରିବ ନାହିଁ । କଳିଙ୍ଗରେ ବିଜୟବାନା ଉଡ଼ାଇବାକୁ ହେଲେ, ଶତ୍ରୁଙ୍କୁ ରକ୍ତସିନ୍ଧୁ ସନ୍ତରଣ କରିବାକୁ ହେବ ।

ଥାନେଶ୍ୱରର ହର୍ଷବର୍ଦ୍ଧନ ଛଅବର୍ଷ ଯୁଦ୍ଧରେ ଜିଣିନେଇ ଉତ୍ତର ଭାରତର ସମସ୍ତ ରାଜ୍ୟ, ଛଅ ଘଣ୍ଟା ମଧ୍ୟରେ ବାବର ଜିଣିନେଲେ ଦିଲ୍ଲୀ ରାଜ୍ୟ, ୧୦ର ଦିନ ମଧ୍ୟରେ ସରିଗଲ ମହାଭାରତ ଯୁଦ୍ଧ । ଆକୁମାରୀ ହିମାଳୟର ଅଧୀଶ୍ୱର ଅଶୋକ ମନେ କରିଥିଲେ,

ବଦଳେ ଦୁଇ ଦିନରେ  ମାସେ ଦୁଇ ମାସରେ କଳିଙ୍ଗ ଜିଣିନେବେ । ସେମାନଙ୍କ ଆଶା ମରୀଚିକାରେ ପରିଣତ ହେଲ । ମଗଧ ସେନା ଯେତେବେଳେ ପଶିବାକୁ ବସିଲେ କଳିଙ୍ଗ ମଧ୍ୟକୁ, ସମ୍ରାଟ୍ ନିଜ ଧାରଣା ଭ୍ରାନ୍ତ ବୋଲି ବୁଝି ପାରିଲେ । ପ୍ରତି ନଦୀ ପାରିବା ବେଳେ, ପ୍ରତି କୂଟବର୍ତ୍ମ ଅତିକ୍ରମ କରିବା ବେଳେ ତାଙ୍କ ଅଗ୍ରଗତିରେ କଳିଙ୍ଗବାସୀ ବାଧା ଦେଲେ । ତାହାଙ୍କୁ ଯୁଦ୍ଧ କରିବାକୁ ପଡ଼ିଲ ପ୍ରତି ଦୁର୍ଗରେ, ପ୍ରତି ଜନପଦରେ; ଦେଖିବାକୁ ହେଲ ଅସଂଖ୍ୟ ରଣତାଣ୍ଡବ; ପ୍ରତି ପଦକ୍ଷେପରେ ଯୁଦ୍ଧ, ପ୍ରତି ମାର୍ଗରେ ଯୁଦ୍ଧ, ପ୍ରତି ନଦୀରେ ଯୁଦ୍ଧ, ପ୍ରତି ଦୁର୍ଗରେ ଯୁଦ୍ଧ, ପ୍ରତି ମୁହୂର୍ତ୍ତରେ ଯୁଦ୍ଧ, ପ୍ରତିଦିନ ଯୁଦ୍ଧ । ଦୁଇ ଦୀର୍ଘ ବର୍ଷବ୍ୟାପୀ ଯୁଦ୍ଧ ! ଜିଣିବାକୁ ଆସିଛନ୍ତି ମଗଧର ଦୃପ୍ତ ସେନା, ସାମ୍ରାଜ୍ୟବାଦୀ ମଗଧ ସମ୍ରାଟ୍ । ଆତ୍ମରକ୍ଷା କରୁଛନ୍ତି, ସ୍ୱାଧୀନତା ପାଇଁ ଆତ୍ମବଳି ଦେଉଛନ୍ତି ସ୍ୱାଧୀନତାପ୍ରାଣ, ପ୍ରାଚୀନଗୌରବନ୍ତ କଳିଙ୍ଗଜାତି । କଳିଙ୍ଗଜାତିର ପ୍ରତିଜ୍ଞା, ଶତ୍ରୁ କଳିଙ୍ଗ ନେଇପାରିବ ନାହିଁ, କଳିଙ୍ଗଜାତିକି ପଦାନତ କରିପାରିବ ନାହିଁ, ନେବ କଳିଙ୍ଗର ଶ୍ମଶାନଭୂମି, ଜାତିର କଙ୍କାଳ । ଜାତିର ପରାଧୀନତା ଅପେକ୍ଷା ରଣଭୂମିରେ କଳିଙ୍ଗବାସୀର ପ୍ରାଣ ବଳିଦାନ ଉତ୍କୃଷ୍ଟତର ନୁହେ ।

ଅଶୋକ କଳ୍ପନା କରି ପାରି ନ ଥିଲେ ଯେ ସେ କଳିଙ୍ଗରେ ଏ ପ୍ରକାର ପ୍ରତିରୋଧ ପାଇବେ । ପ୍ରତିରୋଧର ଗୁରୁତା ଅନୁପାତରେ ତାଙ୍କ କ୍ରୋଧର ଜ୍ୱଳନ୍ତା ପ୍ରଜ୍ୱଳିତ ହେଲ । ସେ ମାଡ଼ିଗଲେ କଳିଙ୍ଗର ଏ ମୁଣ୍ଡରୁ ସେ ମୁଣ୍ଡକୁ, ଛାରଖାର କରିଦେଲେ ଗ୍ରାମ-ନଗର, ପୋଡ଼ିଜାଳି ନଷ୍ଟ କରିଦେଲେ ତୃଣକେଦାର ଶସ୍ୟାଗାର,

ଚେଷ୍ଟାକମେଣ୍ଡା ପର ହାଣିଗଲେ ଅସଂଖ୍ୟ ବୀର ମସ୍ତକ, ନରରକ୍ତରେ ରଞ୍ଜିତ କରିଦେଲେ କଳିଙ୍ଗର ପ୍ରତି ଧୂଳିକଣା ।

ଯୁଦ୍ଧରେ ମାତୃଭୂମିର ସ୍ୱାଧୀନତା ରକ୍ଷା ନିମନ୍ତେ ଯେତେ ଅଧିକ ହାଣ, ତେଜ ଦେଖାଇଲେ କଳିଙ୍ଗବାସୀ, ସେତେ ଅଧିକ ଗଭୀର, ବ୍ୟାପକ ହେଲ ଜାତିର କ୍ଷୟ, ଦେଶରେ ଅପଚୟ । ଲକ୍ଷେ କଳିଙ୍ଗବାସୀ ଯୁଦ୍ଧରେ ନିହତ ହେଲେ, ଦେଢ଼ଲକ୍ଷ ବନ୍ଦୀ ହେଲେ * । ଦୁଇବର୍ଷ କାଳର ଅନବରତ ଯୁଦ୍ଧରେ କୃଷିବାଣିଜ୍ୟର ଘୋର ଅବନତି ଘଟିଲା, ଦେଶରେ ଖାଦ୍ୟର ଅନଟନ ବ୍ୟାପିଗଲା । ଖାଦ୍ୟାଭାବରେ ଲକ୍ଷ ଲକ୍ଷ ଲୋକ ମଲେ । ଖାଦ୍ୟାଭାବରୁ ଦେଖାଗଲା ଦେଶରେ ବିରାଟ ଦୁର୍ଭିକ୍ଷ । ଦେଶରେ ଆବିର୍ଭୂତ ହେଲ ବିକଟ ମହାମାରୀ, ଲକ୍ଷ ଲକ୍ଷ ଲୋକଙ୍କର ଘଟିଲା ପ୍ରାଣକ୍ଷୟ । ଗଗନପବନ ପ୍ରକମ୍ପିତ ହେଲ ବୁଭୁକ୍ଷୁ, ରୁଗ୍ଣ, ନିଷ୍ପୀଡ଼ିତର ହାହାକାର ଆର୍ତ୍ତନାଦରେ, ସହସ୍ର ସହସ୍ର ବିଧବା ଲକ୍ଷ ଲକ୍ଷ ଅନାଥଙ୍କର କରୁଣ ବିକଳ ରୋଦନଧ୍ୱନିରେ । ସନ୍ତାନ ହରାଇ ନିଃସହାୟ ହୋଇ ସହସ୍ର ସହସ୍ର ବୃଦ୍ଧା ଶ୍ରାବଣ ଧାରାଧାର ପରି ଅଶ୍ରୁବୃଷ୍ଟି ବର୍ଷଣ କଲେ । ସର୍ବସ୍ୱତ୍ୟାଗୀ ବ୍ରାହ୍ମଣଶ୍ରମଣ ବ୍ୟଥିତ ପ୍ରାଣରେ ଉଚ୍ଚ ବିକଳ କରୁଣ କ୍ରନ୍ଦନ ଛାଡ଼ିଲେ, ଦେଶରେ କି ପରିଣତି ଘଟିଲା !

ଏ ପ୍ରକାର କରୁଣ ଦୃଶ୍ୟରେ ଶୋଚନୀୟ ପରିଣତିରେ ନିର୍ଜୀବ ପଥରରୁ ପାଣି ଝରିବ । ମନୁଷ୍ୟର ହୃଦୟ ଦମ୍ଭ ଧରିବ

* ଅଶୋକ—କାଳସି ତ୍ରୟୋଦଶ ଶୈଳ ଅନୁଶାସନ ।

କେତେକେ ? ଅଶୋକ କଳିଙ୍ଗ ଜୟ କରିବାକୁ ଆସିଥିଲେ, ସ୍ତବ୍ଧ ହେଲ ତାଙ୍କ ହୃଦୟ ଯୁଦ୍ଧର ଭୟାବହତା ଓ ଶୋଚନୀୟ କରୁଣ ପରିଣତି ଦେଖି । ତାଙ୍କ ରାଜ୍ୟବିସ୍ତାର ଅବସାନ ଘଟିଲା, ମନୋରାଜ୍ୟରେ ପ୍ରଚଣ୍ଡ ବିପ୍ଳବ ଘଟିଲ । ସେ ବୁଝିଲେ, ସେ ପରରାଷ୍ଟ୍ରାପହାରକ, କଳିଙ୍ଗ କେବଳ ଆତ୍ମରକ୍ଷା କରିଛି । ଶତ୍ରୁ ହସ୍ତରୁ ମଗଧରକ୍ଷା ତାଙ୍କର ଯେପରି ଅଭୀଷ୍ଟ, କଳିଙ୍ଗବାସୀଙ୍କ ପକ୍ଷରେ କଳିଙ୍ଗରକ୍ଷା ଠିକ୍ ତଦ୍ରୂପ । ସେ ଜିଣିଛନ୍ତି କଳିଙ୍ଗର ଶ୍ମଶାନଭୂମି, କିନ୍ତୁ ଜିଣିପାରି ନାହାନ୍ତି କଳିଙ୍ଗବାସୀଙ୍କି ! କେବେ ଲକ୍ଷ ଲକ୍ଷ ଲୋକଙ୍କ ପ୍ରାଣ ନଷ୍ଟ କରି, ସୁନାର ଦେଶକୁ ଚୂନା କରି ମରୁଭୂମି ଶ୍ମଶାନରେ ପରିଣତ କରି କି ଲଭ ପାଇଲେ ! କଳିଙ୍ଗ ଆଜି ତାଙ୍କୁ ଶିଖାଇଛି, ଶତ୍ରୁ ହସ୍ତରୁ ପ୍ରାଣବଳିଦାନରେ କିପରି ମାତୃଭୂମି ରକ୍ଷା କରିବାକୁ ହୁଏ ! ଆଜି ସେ ବିଜେତା, ବିଜେତା ନୁହନ୍ତି ।

ଅନୁତାପାନଳରେ ଅଶୋକଙ୍କ ହୃଦୟ ଦଗ୍ଧୀଭୂତ ହେଲ । କଳିଙ୍ଗ ବଦଳାଇଦେଲ ବିଜେତାର ହୃଦୟ, ଦେଖାଇ ଦେଲ ସାମ୍ରାଜ୍ୟଲିପ୍ସୁକୁ ତାର ଭ୍ରମ, ଶିଖାଇଦେଲ ମାନବିକତା ବିଶ୍ୱପ୍ରେମ । ଅଶୋକ ବୁଝିଲେ, ଅସିଧାରୀ କେବେ ବିଜେତା-ଆସନରେ ବସି ନ ପାରେ । ସେହି ଏକା ପ୍ରକୃତ ବିଜୟୀ ଯେ ପ୍ରେମମନ୍ତ୍ରରେ ଜିଣିପାରେ ମାନବର ହୃଦୟ । ଅଶୋକ କଳିଙ୍ଗ ବିଜେତା ନୁହନ୍ତି, କଳିଙ୍ଗବାସୀ ପ୍ରକୃତରେ ଅଶୋକବିଜେତା ! କଳିଙ୍ଗ ଆଜି ଅଶୋକଙ୍କ ଶିକ୍ଷକ, ତାଙ୍କୁ ଶିଖାଇଛି ଦେଶପ୍ରେମ, ସ୍ୱାଧୀନତାବହ୍ନିର ଉଗ୍ରତା, ମଗଧ ସମ୍ରାଟଙ୍କୁ ଶିଖାଇଛି ସାମ୍ୟମୈତ୍ରୀ, ବିଶ୍ୱପ୍ରେମମନ୍ତ୍ର । କଳିଙ୍ଗଯୁଦ୍ଧରୁ ନୂତନ ମନ୍ତ୍ରଦୀକ୍ଷା ପାଇ ଅସିବଳରେ ଭାରତବିଜେତା

ଦେଖିଲ ବାହାରିଲେ ପ୍ରେମବଳରେ ପୃଥିବୀ ଜୟ କରିବାକୁ, ତଥା ଭାରତରେ ପ୍ରେମଶକ୍ତିର ନିନାଦ ଘୋଷଣା କରିବାକୁ । ଅଶୋକଙ୍କୁ କଳିଙ୍ଗ ପୃଥିବୀର ସର୍ବଶ୍ରେଷ୍ଠ ମାନବରେ ପରିଣତ କଲା । କଳିଙ୍ଗ-ଯୁଦ୍ଧ ବଦଳାଇଦେଲା ଭାରତ ଇତିହାସର ଗତି, ପୃଥିବୀକୁ ଦେଲା ଏକ ନୂତନ ମହାଦୀକ୍ଷା, ଜଗତରେ ଉଡ଼ାଇଲା ଭାରତର ପ୍ରେମଧର୍ମର ଗୌରବ ଧ୍ୱଜା, ଜଣାଇଦେଲା ମାନବ ସମାଜକୁ ହିଂସା ଉପରେ ଅହିଂସାର ବିଜୟ ! ମାନବ ଜାତିର ଇତିହାସରେ କଳିଙ୍ଗର ଏହି ମହାଦାନ କଳିଙ୍ଗ ବୀରର ରକ୍ତମସିରେ ଲିପିବଦ୍ଧ ହେଲା ।

କଳିଙ୍ଗର ହୃଦୟକନ୍ଦର ମଧ୍ୟରୁ ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ଅଶୋକ ଘୋଷଣା କଲେ, "କଳିଙ୍ଗଯୁଦ୍ଧର ନରହତ୍ୟା, ନିର୍ବାସନରେ ଦୁଃଖ, ଶୋକ, ଅନୁତାପରେ ଦଗ୍ଧ ହେଉଛି ମୋର ହୃଦୟ । ମୁଁ ବୁଝି ପାରୁଛି ମୋର ଭୀଷଣ ଭୁଲ । କଳିଙ୍ଗଯୁଦ୍ଧର ଲୋକକ୍ଷୟର ଶତାଂଶ ପରି ବୃଦ୍ଧି ଯେବେ ଦୁଃଖ କଷ୍ଟ ଭୋଗ କରନ୍ତି, ତେବେ ଫାଟିଯିବ ମୋର ହୃଦୟ * ।" ସେ ବଜ୍ରଗମ୍ଭୀର ସ୍ୱରରେ ପ୍ରଚାର କଲେ ତାଙ୍କର ନୂତନ ବାଣୀମନ୍ତ୍ର । "ମନୁଷ୍ୟ-ମାତ୍ରେ ମୋର ସନ୍ତାନ । ଇହ ପର ଉଭୟ ଜଗତରେ ମାନବ ମାତ୍ରକୁ ସୁଖୀ କରାଇବା ହେଉ ମୋର ଉଦ୍ଦେଶ୍ୟ ଓ ଦୀକ୍ଷା § ।" ସଂସାର ଅସିବଳରୁ ପ୍ରେମର ଧର୍ମ ବଳରେ ପରିଣତ ହେଲା । କେତେ ବଡ଼ ରଜା, କେତେ ଦିଗ୍‌ବିଜୟୀ ବୀର, କେତେ ବୁଦ୍ଧିମ

* ଅଶୋକ—କାଲସି ତ୍ରୟୋଦଶ ଶୈଳ ଅନୁଶାସନ ।
§ ଅଶୋକ—ଜଉଗଡ଼ ଶୈଳ ଅନୁଶାସନ ।

ନ ଥିଲେ ପୃଥିବୀରେ ? ପୃଥିବୀ ସମସ୍ତଙ୍କୁ ବିସ୍ମୃତ ଗର୍ଭରେ ଲୀନ କରିଛି । କିନ୍ତୁ ଦେବାନାଂ ପ୍ରିୟ, ପ୍ରିୟଦର୍ଶୀ ରାଜା ଅଶୋକ ଆଜି ଅଜର, ଅମର; ସେ ଆଜି ପୃଥିବୀର ସର୍ବଶ୍ରେଷ୍ଠ ବିଜେତା, ସର୍ବଶ୍ରେଷ୍ଠ ମାନବ । ଧନ୍ୟ କଳିଙ୍ଗ, ଧନ୍ୟ କଳିଙ୍ଗ ଜାତି, ତୁମେ ବଦଳାଇ ପାରିଛ ପୃଥିବୀ ଇତିହାସର ଗତିକୁ ।

ଅଶୋକଙ୍କ ତ୍ରୟୋଦଶ ଶୈଳ ଅନୁଶାସନରୁ ଜଣାଯାଏ ଯେ 'କଳିଙ୍ଗଯୁଦ୍ଧରେ ଦେଢ଼ ଲକ୍ଷ ବନ୍ଦୀ ହୋଇଥିଲେ, ଲକ୍ଷେ ନିହତ ହୋଇଥିଲେ ଏବଂ ଏହି ଦୁଇ ସଂଖ୍ୟାର ଅନେକ ଗୁଣ ମୃତ ହୋଇ-ଥିଲେ ।' ସୁତରାଂ ଏହି ବନ୍ଦୀ ଓ ନିହତ ଅଢ଼େଇ ଲକ୍ଷର କେତେଗୁଣ ଯୁଦ୍ଧରେ ଯୋଗ ଦେଇଥିଲେ, ତାହା ସହଜରେ ଅନୁମେୟ ! ମେଗାସ୍ଥିନିଅଙ୍କ ବିବରଣରୁ ଜଣାଯାଏ ଯେ କଳିଙ୍ଗ ରାଜାଙ୍କର ଅନଧିକ ସତୁରି ହଜାର ସୈନ୍ୟ ଥିଲେ * । ସୁତରାଂ ଅବଶିଷ୍ଟ ସୈନିକ ନିଶ୍ଚୟ ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳରୁ ବା ସାମନ୍ତ ରାଜ୍ୟରୁ ସଂଗୃହୀତ ହୋଇଥିବେ । ପ୍ଲିନିଙ୍କ ବିବରଣରୁ ଜଣାଯାଏ ଯେ କୋଶଳରେ ଛଅ ନିୟୁତ ସୈନିକ ଥିଲେ ‡ । ଅର୍ଥାତ୍ କଳିଙ୍ଗର ପ୍ରାଦେଶିକ ଅଞ୍ଚଳମାନଙ୍କରେ କେନ୍ଦ୍ରର ପ୍ରାୟ ଚୌଦ ଗୁଣ ସୈନିକ ରହୁଥିଲେ । ଗଙ୍ଗାରିଡ଼ କଳିଙ୍ଗ, ମଗ କଳିଙ୍ଗ ପ୍ରଭୃତି ଅଞ୍ଚଳରେ

* Ancient India—Megasthenes and Arrian, —P. 136. M'Crindle.

‡ Pliny.

ମଧ୍ୟ ରହିଥିଲା ସେନାଶିବିର, ଯେଉଁଠାରୁ ଯୁଦ୍ଧବେଳେ ସୈନ୍ୟ ଆହରଣ କରି ଯାଉଥିଲା ।

କଳିଙ୍ଗଯୁଦ୍ଧରେ କଳିଙ୍ଗସେନା ଏକା ସମୟରେ ଗୋଟିଏ ଯୁଦ୍ଧ କ୍ଷେତ୍ରରେ ସମବେତ ହୋଇ ଲଢ଼ି ନ ଥିଲେ । ସୈନ୍ୟମାନେ ଦୁର୍ଗମାନଙ୍କରେ ନିବେଶିତ ହୋଇଥିଲେ । ଅଶୋକ ଦୁର୍ଗମାନ ଆକ୍ରମଣ କରିବା ବେଳେ ଅଭ୍ୟନ୍ତରସ୍ଥ ସେନା ଦୁର୍ଗ ରକ୍ଷା କରିଥିବେ, କଳିଙ୍ଗର ବହିଃ ସୈନ୍ୟ ଶତ୍ରୁକୁ ତଡ଼ି ଦେବାର ଚେଷ୍ଟା କରିଥିବେ । ଏହିପରି ଦୁର୍ଗ ପରେ ଦୁର୍ଗ ନିକଟରେ ଯୁଦ୍ଧ କରି ଏବଂ ଦୁର୍ଗମାନ ହସ୍ତଗତ କରି ଅଶୋକ ଆଗକୁ ଅଗ୍ରସର ହୋଇଥିବେ । ପଥରେ ନଦୀ ଘାଟରେ, କୂଟ ସ୍ଥାନରେ, ଅରଣ୍ୟବର୍ତ୍ମରେ ସର୍ବଦା କଳିଙ୍ଗସେନା ଅଶୋକଙ୍କ ଅଗ୍ରଗତିରେ ବାଧା ଦେଇଥିବ ।

ଏପ୍ରକାର ଯୁଦ୍ଧରେ ଜୟ ଲାଭ କରିବା ବା ଲଢ଼ିବା ମଧ୍ୟ ଅଶୋକଙ୍କ ପକ୍ଷରେ ସହଜ ନ ଥିଲା । କଳିଙ୍ଗର ଶେଷ ଯୁଦ୍ଧ ଘାଟି ଜଉଗଡ଼ରେ ପହଞ୍ଚିବା ବେଳକୁ ତାଙ୍କର ଦୁଇ ବର୍ଷ କଟିଗଲା । କଳିଙ୍ଗବାସୀଙ୍କ ରଣଦର୍ପ ଦେଖି ତାଙ୍କର ସାହସ ଓ ଧୈର୍ଯ୍ୟ ତୁଟିଗଲା । ସେମାନଙ୍କ ଜନ୍ମଭୂମିମମତା ଓ ସ୍ୱାଧୀନତାଲିପ୍ସା ପ୍ରତ୍ୟକ୍ଷ କରି ତାଙ୍କ ବିଜୟ ଲିପ୍ସା ତୁଟିଗଲା । ସେ କଳିଙ୍ଗ ହସ୍ତଗତ କଲେ, କିନ୍ତୁ କଳିଙ୍ଗବାସୀଙ୍କି ପାରିଲେ ନାହିଁ ବୋଲି ବୁଝି ଅଶୋକଙ୍କ ପ୍ରାଣକୁ ଅନୁତାପ ଓ ବୈରାଗ୍ୟ ଘୋଟିଗଲା । ଦୁର୍ଗ ହରାଇ, ରାଜ୍ୟ ହରାଇ, ସୈନ୍ୟ ହରାଇ, ଆତ୍ମୀୟସ୍ୱଜନ ହରାଇ, କଳିଙ୍ଗ ସମ୍ରାଟଙ୍କ ସ୍ୱାଧୀନତାପିପାସା ଶେଷ ପର୍ଯ୍ୟନ୍ତ ମେଣ୍ଟିଲା ନାହିଁ । ଶତ୍ରୁ ଗୋଟିଏ ଅଞ୍ଚଳ ଦଖଲ କରିବା ପରେ କଳିଙ୍ଗବାସୀ ଓ ସମ୍ରାଟ୍ ଅନ୍ୟ ଅଞ୍ଚଳକୁ

ତଣ୍ଡି ଧରୁଥିଲେ । ଅଶୋକ ଏତେ କଥା ଦେଖିବା ପରେ ଅସି ତ୍ୟାଗ ନ କରି ରହିପାରିଲେ ନାହିଁ ଏବଂ ସେ କଥା ସ୍ୱୀକାର କରିଛନ୍ତି ନିଜ ଶୈଳ ଅନୁଶାସନରେ * ।

ଚେଦିବଂଶୀୟ କଳିଙ୍ଗ ରାଜା ପରାଜୟ ସ୍ୱୀକାର ନ କରି ଆଶ୍ରୟ ନେଲେ ଅରଣ୍ୟାକୀର୍ଣ୍ଣ କୋଶଳ ଖଣ୍ଡରେ । ସମ୍ଭବତଃ ସେ ଆଧୁନିକ ବଲାଙ୍ଗିରପାଟଣା ଜିଲ୍ଲାର ସୋନପୁରରେ ନବ ନିବେଶ ଓ ରାଜଧାନୀ ସ୍ଥାପନ କରିଥିଲେ § । ତେଣେ ମଗଧ-ଅଧିକୃତ ଅଞ୍ଚଳରେ ବୀରକଳିଙ୍ଗମାନେ ଗୁହାକୁ ଗୁହା ବିଦ୍ରୋହବହ୍ନି ଜାଳିଲେ ‡ । ¶ ଶାନ୍ତି ଶୃଙ୍ଖଳା ନିମନ୍ତେ ଅଶୋକ କୁମାରମାନ୍ୟ ଓ ମହାମାତ୍ରମାନଙ୍କୁ ଦୟାମିଶ୍ର ବ୍ୟବହାରର ଆଶ୍ରୟ ନେବାକୁ ବାରମ୍ବାର

* § ‡ ¶ ଅଶୋକ—କାଲସି ତ୍ରୟୋଦଶ ଶୈଳ ଅନୁଶାସନ :—

"× × × ସେ ଅଥି ଅନୁସୟେ ଦେବାନଂ ପିୟସ୍ୟ ବିଜିନିତୁ କଲିଗ୍ୟାନି । ଅବିଜିତଂ ହି ବିଜିନମନେ ଏ ତତା ବଧଂ ବା ମଲନେ ବା ଅପବହେ ବା ଜନସା । ସେବାଢ ବେଦନିୟମୁତେ ଗୁରୁମୁତେ ଚ ଦେବାନଂ ପିୟସା ।"

(ଓଡ଼ିଆ ଅନୁବାଦ—କଳିଙ୍ଗବିଜୟୀ ପ୍ରିୟଦର୍ଶୀ ରାଜା ବର୍ତ୍ତମାନ ଘୋର ଅନୁତାପ କରୁଛନ୍ତି । ବିଜିତ ହେଲେ ସୁଦ୍ଧା ସହସ୍ର ସହସ୍ର ଲୋକଙ୍କର ବଧ, ମରଣ, ସ୍ଥାନାନ୍ତରୀକରଣ ଯୋଗୁଁ ସେ କଳିଙ୍ଗକୁ ଅବିଜିତ ବୋଲି ମନେ କରୁଛନ୍ତି । ଏପରି ନୃଶଂସ ନରହତ୍ୟା ଯୋଗୁଁ ଦେବପ୍ରିୟ ଘୋର ମନସ୍ତାପ କରୁଛନ୍ତି ।)

[ପର ପୃଷ୍ଠା ଦେଖ]

ପରାମର୍ଶ ଦେଲେ । ଜଉଗଡ଼ ସ୍ୱତନ୍ତ୍ର ଅନୁଶାସନରେ ଅପରାଜିତ ସୀମାନ୍ତ ଜାତିର କଥା † ବର୍ଣ୍ଣିତ ହୋଇଅଛି ।

କଳିଙ୍ଗ ଯୁଦ୍ଧର କଥା ଅଶୋକ ବର୍ଣ୍ଣନା କରିଛନ୍ତି ତ୍ରୟୋଦଶ ଶୈଳ ଅନୁଶାସନରେ । ଧଉଳି ଓ ଜଉଗଡ଼ରେ ଥିବା ଦୁଇ କଳିଙ୍ଗ

[ପୂର୍ବ ପୃଷ୍ଠା ଦେଖ]

ଅନ୍ୟ ଏକ ଅଂଶର ସଂସ୍କୃତ ଅନୁବାଦ —

"× × × ଦେବାନାଂ ପ୍ରିୟସ୍ୟ ଯୋଽପି ଚ ଅପକରୋତି କ୍ଷନ୍ତବ୍ୟ ଏବ ମତୋ ଦେବାନାଂ ପ୍ରିୟସ୍ୟ ଯଃ ଶକ୍ୟଃ କ୍ଷମଣାୟ ଯୋଽପି ବୃଦ୍ୟାପି ଦେବାନାଂ ପ୍ରିୟସ୍ୟ ବିଜିତେ ଭବତି ତଥାପ୍ୟନୁନୟତି ଅନୁନିଧ୍ୟାୟତ୍ୟନୁତପ୍ୟତେଽପି ଚ ପ୍ରଭବେ ଦେବାନାଂ ପ୍ରିୟସ୍ୟ ବର୍ତ୍ତତେ ଚ ସ ସର୍ବଃ ।"

(ଓଡ଼ିଆ ଅନୁବାଦ—ଅପକାରୀ ବର୍ତ୍ତମାନ ସୁଦ୍ଧା ନିଜ ଦୋଷ ସ୍ୱୀକାର କଲେ କ୍ଷମା ପାଇବ । ଏବେ ମଧ୍ୟ କେହି ଲୋକ ଦେବପ୍ରିୟଙ୍କର ଶରଣାପନ୍ନ ହେଲେ କିଂବା ଅନୁନୟପୂର୍ବକ ଅନୁତାପ ବା ଦୋଷ-ସ୍ୱୀକାର କଲେ କ୍ଷମା ପାଇବ ।)

† ଅଶୋକ—ଜଉଗଡ଼ ପ୍ରଥମ ଶୈଳ ଅନୁଶାସନ ।

English Translation of Kalsi Rock Edict XIII:—

× × ×

Even he who to-day does mischief is considered pardonable by the Beloved of

[contd. next page]

ଶୈଳ ଅନୁଶାସନଟିରେ ଏହି ତ୍ରୟୋଦଶ ଅନୁଶାସନର ଉଲ୍ଲେଖ ନାହିଁ । କାରଣ, ଅଶୋକ ମନେ କରିଥିଲେ, ତହିଁର ଉଲ୍ଲେଖ ହୋଇଥିଲେ, ତାହା ପାଠ କରି ସାରା କଳିଙ୍ଗବାସୀଙ୍କର କାଳେ କ୍ରୋଧର ଉଦ୍ରେକ ହେବ ।

କଳିଙ୍ଗର ବିଭାଗମାନଙ୍କ ମଧ୍ୟରୁ କେବଳ ପ୍ରାଚୀକଳିଙ୍ଗ ଓ ଗଙ୍ଗାରିଡ଼ି କଳିଙ୍ଗ ଅଶୋକଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ତୋଷାଳି ଓ ସମାପ (ଜଉଗଡ଼)କୁ ଅଶୋକ ରାଜଧାନୀ କରିଥିଲେ ।

[contd. from P. 85]

the gods, whom he can pardon. And also the forest folk (meaning 'those who live or hide themselves in forests') who happen to be in the domain of the Beloved of the gods, even them he entreats and persuades to think; the remorse as well as power of the Beloved of the gods ought to be explained to them so that they will be ashamed of their conduct and will not get killed. Verily the Beloved of the gods wishes all living beings noninjury, selfcontrol, practice of scrutiny and mildness. × × ×.

(Inscriptions of Ashoka, Part II, P. I92
—Benimadhav Barua, Calcutta University).

ତୋଷାଳିରେ ଜଣେ କୁମାରାମାତ୍ୟ ଏବଂ ସମାପରେ କେତେ ଜଣ ମହାମାତ୍ର ଶାସନକର୍ତ୍ତା ରୂପେ ନିଯୁକ୍ତ ହୋଇଥିଲେ * । କୋଶଳଖଣ୍ଡ ଅଶୋକଙ୍କ ଆନୁଗତ୍ୟ § ସ୍ୱୀକାର କରି ନ ଥିଲା । ଯୁଦ୍ଧବିମୁଖ ଅଶୋକ କୋଶଳ ଜୟ କରିବା ପ୍ରୟାସ ବର୍ଜନ କରିଥିଲେ ।

କଳିଙ୍ଗଯୁଦ୍ଧ ପରେ ଗଙ୍ଗାରିଦ୍ଧ କଳିଙ୍ଗ ମୌର୍ଯ୍ୟ ସାମ୍ରାଜ୍ୟରେ ମିଶିଥିଲା ‡ । ପ୍ରାଚୀକଳିଙ୍ଗ ତଥା ଗଙ୍ଗାରିଦ୍ଧ କଳିଙ୍ଗ ଉଭୟର ମୌର୍ଯ୍ୟଶାସନ ବିପକ୍ଷରେ ନାନାପ୍ରକାର ବିଦ୍ରୋହ ହେବାର ଦେଖା ଯାଉଥିଲା । ଦିବ୍ୟାବଦାନ ନାମକ ବୌଦ୍ଧଗ୍ରନ୍ଥରୁ ଜଣାଯାଏ ଯେ ଅବାଧ୍ୟତା ହେତୁ ପୁଣ୍ଡ୍ରବର୍ଦ୍ଧନର ଆଜୀବକ ଜୈନମାନଙ୍କୁ

* ଧଉଳି ଶୈଳ ଅନୁଶାସନରୁ ଜଣାଯାଏ ଯେ ତୋଷାଳିରେ ଜଣେ କୁମାର (ଶାସନକର୍ତ୍ତା) ଓ ମହାମାତ୍ରମାନେ (ଅଧସ୍ତନ କର୍ମଚାରୀ) ରହୁଥିଲେ । ଜଉଗଡ଼ ଶୈଳ ଅନୁଶାସନରୁ ଜଣାଯାଏ ଯେ ସମାପରେ କେହି କୁମାର ନ ଥିଲେ । ତାମ୍ରଲିପ୍ତ ଓ ଗଙ୍ଗାରିଦ୍ଧ କଳିଙ୍ଗର ଶାସନ କଥା ଏ ପର୍ଯ୍ୟନ୍ତ ଜଣା ଯାଇ ନାହିଁ । ସମ୍ଭବତଃ ଗଙ୍ଗାରିଦ୍ଧ କଳିଙ୍ଗ ଅନ୍ୟ କୌଣସି ରାଜଧାନୀରୁ ଶାସିତ ହେଉଥିଲା ।

§ ଚେଡି ବଂଶୀୟ ରାଜା କୋଶଳ ଖଣ୍ଡରେ ଆଶ୍ରୟ ନେଇ ତୋଷଳୀରେ ନୂଆ ରାଜଧାନୀ ସ୍ଥାପନ କରିଥିବାର ଅନୁମାନ କରାଯାଏ । ସେ ଏହାକୁ ତୋଷାଳି ବା "ତୋଷଳ" ନାମ ଦେଇଥିଲେ । କ୍ରମେ ତାହା "ତୋଷର" ହୋଇଅଛି ।

‡ "× × × the final occupation of the land of Gangaridai may have been

ଅଶୋକ ବାରମ୍ବାର ଦଣ୍ଡବିଧାନ କରିଥିଲେ । ସମ୍ଭବତଃ ଏହି ଜୈନମାନେ କଳିଙ୍ଗରାଜାଙ୍କ ସପକ୍ଷ ଲୋକ ଥିଲେ * । ବଙ୍ଗଳାର କୌଣସି ଅଞ୍ଚଳରେ ଅଶୋକଙ୍କ ଅନୁଶାସନ ଦେଖାଯାଏ ନାହିଁ । ସେଥିରୁ ବୁଝାପଡ଼େ, ତାମ୍ରଲିପ୍ତ ଓ ଗଙ୍ଗାରିଡ଼ି ଅଞ୍ଚଳ ଅପେକ୍ଷା ଅଶୋକ ଧଉଳି ଓ ଜଉଗଡ଼ ଅଞ୍ଚଳ ପ୍ରତି ଅଧିକ ମନୋଯୋଗ ଦେଇଥିଲେ ।

ମଗଧ ସାମ୍ରାଜ୍ୟ ପାଞ୍ଚ ପ୍ରଦେଶରେ ବିଭକ୍ତ ହୋଇଥିଲା: ପାଟଳିପୁତ୍ର, ଉଜ୍ଜୟିନୀ, ତକ୍ଷଶିଳା, ସୁବର୍ଣ୍ଣଗିରି ଓ ତୋଷାଳି । ଏଥିରୁ ବୁଝାପଡ଼େ ଯେ ଉତ୍ତର ବଙ୍ଗଳା ଅଞ୍ଚଳ ଚନ୍ଦ୍ରଗୁପ୍ତଙ୍କ ଅମଳରୁ ରାଜଧାନୀ ପାଟଳିପୁତ୍ରରୁ ଶାସିତ ହେଉଥିଲା । ଗଙ୍ଗାରିଡ଼ି କଳିଙ୍ଗ ଓ ତାମ୍ରଲିପ୍ତ ଅଞ୍ଚଳ ସମ୍ଭବତଃ ତୋଷାଳିରୁ ଶାସିତ ହେଉଥିଲା § । ସମ୍ବଲପୁର କୋଶଳ ଅଶୋକୀୟ ଶିଳାଲିପିରେ

achieved later by Ashoka as a result of his great Kalinga war".
(Some Historical Aspects of the Inscriptions of Bengal.—Benoy Chandra Sen, Ph. D. —Calcutta University—P. 68.)

* "ପୁଣ୍ଡ୍ରବର୍ଦ୍ଧନେ ସର୍ବେ ଆଜୀବକାଃ ଉଘାତୟିତବ୍ୟାଃ ।"

§ "If Bengal were an Anta Country or a Raja-Vishaya in relation to Ashoka's empire, we should expect it to be included in either of the categories mentioned in

ଅଧିକାର (ଅଧିକୃତ) ଅଞ୍ଚଳ ରୂପେ ସ୍ୱୀକୃତ ହୋଇଅଛି । ସୁତରାଂ ତାଙ୍କ ଶାସନ ନିମନ୍ତେ କୌଣସି ପ୍ରକାର ବ୍ୟବସ୍ଥା କରାଯାଇ ନ ଥିଲା, କିମ୍ବା ସେହି ଅଞ୍ଚଳ ଜୟ କରିବା ନିମନ୍ତେ ଅଶୋକ ମନରେ ଚିନ୍ତା ସୁଦ୍ଧା ଜାତ ନ ଥିଲା ।



his inscriptions. There is also no definite reference to Bengal in the list of the provinces which were not directly administered by the emperor hrmself. × × × The Kalinga Province of the empire, which consisted of two divisions with their respective headquarters at Tosali and Samapa, probably included the whole or the greater part of the territory of the Gangaridae."
(Some Historical Aspects of the Inscriptions of Bengal.—Benoy Chandra Sen—Calcutta University—P. 170)

( ୫ )

# ଶ୍ରୀ ଖାରବେଳ ଚେତ

ପ୍ରାଚୀନ ଭାରତର ଅଧିବାସୀମାନେ ଧର୍ମର ନାମକରଣ କରୁ ନ ଥିଲେ । ଯେତେବେଳେ ଗୌତମ ବୁଦ୍ଧ ଓ ମହାବୀର ଜୀନ ନିଜ ନିଜ ଧର୍ମମତ ପ୍ରଚାର କଲେ, ସେମାନେ ମଧ୍ୟ ନିଜ ନିଜ ଧର୍ମମତର ନାମକରଣ କରି ନ ଥିଲେ । ସେମାନେ ସ୍ୱପ୍ନରେ ସୁଦ୍ଧା ମନେ କରି ନ ଥିଲେ ଯେ ସେମାନେ ଗୋଟିଏ ଗୋଟିଏ ନୂଆ ଧର୍ମ ପ୍ରଚାର କରୁଛନ୍ତି । ମୂଳରେ ହିନ୍ଦୁ, ବୌଦ୍ଧ ବା ଜୈନ ବୋଲି କୌଣସି କାଳରେ ଭାରତରେ ତିନୋଟି ପୃଥକ୍ ଧର୍ମ ନ ଥିଲା । ବୁଦ୍ଧ ଓ ଜୀନ ପ୍ରକୃତରେ ପ୍ରଚାର କରି ନାହାନ୍ତି ନୂତନ ଧର୍ମ, ସେମାନେ ପ୍ରଚାର କରିଛନ୍ତି ମତବାଦ ବା ଧର୍ମପନ୍ଥା ବା ପୃଥକ୍ ଦର୍ଶନ । ଅନ୍ୟ କଥାରେ କହିବାକୁ ହେବ ଯେ ଯେପରି ଶୈବ, ଶାକ୍ତ, ଗାଣପତ୍ୟ, ବୈଷ୍ଣବ ପ୍ରଭୃତି ମତ ଗୋଟିଏ ଗୋଟିଏ ପୃଥକ୍ ଧର୍ମ ନୁହେ, ବୌଦ୍ଧ ଓ ଜୈନ ମତ ମଧ୍ୟ ସେହିପରି ପୃଥକ୍ ଧର୍ମ ନୁହେ ।

ଅଶୋକଙ୍କୁ ବୌଦ୍ଧଧର୍ମାବଲମ୍ବୀ, ଖାରବେଳଙ୍କୁ ଜୈନଧର୍ମାବଲମ୍ବୀ ବୋଲି କହିବାଦ୍ୱାରା କିମ୍ବା ଭାରତବାସୀଙ୍କୁ ହିନ୍ଦୁ, ଜୈନ ବା ବୌଦ୍ଧ ଧର୍ମାବଲମ୍ବୀ ବୋଲି କହିବାଦ୍ୱାରା କେବଳ ସତ୍ୟର ଅପଳାପ ହୁଏ । ଭାରତର ଧର୍ମର ନାମ ହିନ୍ଦୁଧର୍ମ ନୁହେ, ଭାରତରେ ହିନ୍ଦୁ କେହି ନାହାନ୍ତି । ଭାରତୀୟର ଧର୍ମର ନାମ ନାହିଁ । ଭାରତର

ଧର୍ମ ସନାତନ, ସେହି ସନାତନର ମଧ୍ୟରେ ବୈଷ୍ଣବ, ଶାକ୍ତ, ଶୈବ, ଗାଣପତ୍ୟ, ବୌଦ୍ଧ, ଜୈନ ସବୁ ମତ ଅନ୍ତର୍ଗତ । ଭାରତର ସନାତନଭିତ୍ତିର ଉପାସକ ଋଷିମାନେ କେବଳ ପ୍ରଚାର କରିଛନ୍ତି ମୁକ୍ତିର ବଳିଷ୍ଠ ଚିନ୍ତା, ମାର୍ଗ, ମତ ବା ଯୋଗ । ସେମାନେ ସମାଜକୁ କେବଳ ଦେଇଛନ୍ତି ଗୋଟିଏ ଗୋଟିଏ ଦର୍ଶନ । ବୁଦ୍ଧଙ୍କର ମତ ଶୂନ୍ୟବାଦ ବା ଶୂନ୍ୟଦର୍ଶନ ।

ଭାରତୀୟଙ୍କ ଦୃଷ୍ଟିରେ ଧର୍ମ ଗୋଟିଏ ଜୀବନ୍ତ, ଯାହାର ଆବର୍ତ୍ତନ ମନୁଷ୍ୟର ଆବର୍ତ୍ତନ ସହିତ ଏବଂ ଯାହାର ବିବର୍ତ୍ତନ ବା କ୍ରମବିକାଶ ମନୁଷ୍ୟର ମନର ଆକଳନ ପର୍ଯ୍ୟାୟ ଅନୁସାରେ । ବେଦରେ ଧର୍ମର ଯେଉଁ କଳ୍ପନା କରାଯାଇଅଛି, ତାହା କେବଳ ଅଗ୍ନିପୂଜା ।

ଓଁ ଅଗ୍ନିମୀଳେ ପୁରୋହିତଂ ଯଜ୍ଞସ୍ୟ
ଦେବମୃତ୍ୱିଜଂ ହୋତାରଂ ରତ୍ନଧାତମଂ ।

ଅଗ୍ନି ଦେବତା, ସେ ହିଁ ପୁରୋହିତ ଓ ଋତ୍ୱିକ୍ । ଅଗ୍ନି ସମସ୍ତ ରତ୍ନ ଓ ସମ୍ପତ୍ତିର ଭଣ୍ଡାର ।

ଅଗ୍ନିଃ ପୂର୍ବେଭିଃ ଋଷିଭିରୀଡ୍ୟୋ ନୂତନୈରୁତ
ସ ଦେବାଁ ଏହ ବକ୍ଷତି ।

ପ୍ରାଚୀନ ଓ ଆଧୁନିକ ଋଷିମାନେ ଅଗ୍ନିଙ୍କୁ ସ୍ତୁତି କରନ୍ତି । ଏ ପ୍ରକାରେ ପ୍ରାର୍ଥିତ ଅଗ୍ନି ଦେବତାଗଣଙ୍କୁ ଆଣି ଉପଗତ କରନ୍ତି ଯଜ୍ଞରେ ।

ଅଗ୍ନିର୍ହୋତା କବିକ୍ରତୁଃ ସତ୍ୟଶ୍ଚିତ୍ରଶ୍ରବସ୍ତମଃ
ଦେବୋ ଦେବେଭିରାଗମତ୍ ।

ଅଗ୍ନି ହୋତା ବା ଯଜ୍ଞର ଅନୁଷ୍ଠାତା । ଅଗ୍ନି ଯଜ୍ଞର ହବ ନେଇ ପହଞ୍ଚାନ୍ତି ଦେବଗଣଙ୍କ ଗ୍ରାମରେ । ସେ ବାଅନ୍ତି ଯଜ୍ଞର ଫଳ, ସେ ତହ କର୍ତ୍ତା, ସେ ନିଜେ ଈଶ୍ୱର । ସେ ଦେବତାଗଣଙ୍କ ସହ ଆସନ୍ତୁ ଯଜ୍ଞକୁ ।

ସ ନଃ ପିତେବ ସୂନବେଽଗ୍ନେ ସୂପାୟନୋ
ଭବ ସଚସ୍ୱା ନଃ ସ୍ୱସ୍ତୟେ ।

ପିତା ଯେପରି ପୁତ୍ରର ସହଜଲଭ୍ୟ, ଆମ୍ଭର ମଙ୍ଗଳ ନିମନ୍ତେ ଅଗ୍ନି ସେହିପରି ଆମ୍ଭର ସହଜଲଭ୍ୟ ହୁଅନ୍ତୁ ।

ଋକ୍‌ବେଦର ପୂର୍ବୋକ୍ତ ପ୍ରକାର ପ୍ରଥମ ନଅ ଋକ୍ ଦେଖାଏ ଭାରତୀୟ ଦର୍ଶନ ଓ ଚିନ୍ତାର ପରାକାଷ୍ଠା, ସୃଷ୍ଟିରେ ସୃଷ୍ଟିଏ ଭାରତୀୟର ଈଶ୍ୱରଧାରଣା । ଅଗ୍ନି ବା ସୃଷ୍ଟ୍ୟାନୁସୃଷ୍ଟ ଅଗ୍ନିକଣାର ସମବାୟ ଓ ପ୍ରକାଶ ଏହି ବିଶ୍ୱ । ଅଗ୍ନି ଜୀବନସ୍ରୋତ ଓ ସୃଷ୍ଟିର ମୂଳ, ସୃଷ୍ଟିର ଦ୍ୟୋତକ । ପିଣ୍ଡୀକୃତ ହେଲେ ଅଗ୍ନି ଜୀବନ ବା ଭୂତ୍ୟ ବା ବସ୍ତୁ ଆକାରରେ ଗୋଚର ହୁଏ, ଯହିଁରୁ ଉଦ୍ଭବ ହୁଏ ବାୟୁମଣ୍ଡଳ, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି (ତେଜ), ବାୟୁ, ଜଳ, ପୃଥିବୀ, ଜୀବନ । ଅଗ୍ନି ବ୍ୟାପିଛି ଅନନ୍ତ ବିଶ୍ୱ ଓ ଶୂନ୍ୟକୁ, ତାହାକୁ ନାମ ଦେଇଛି ଭାରତୀୟ ପ୍ରକୃତ ପୁରୁଷ ବା ବ୍ରହ୍ମଜୀବ ବୋଲି । ବେଦରେ ପ୍ରତ୍ୟେକିତ ହୋଇଛି ସେହି ଅଷ୍ଟଧା ପ୍ରକୃତିର ପୂଜା, ଯାହାର ମୂଳ ଅଗ୍ନି ବା ଅଗ୍ନି, ତେଣୁ ଅଗ୍ନିସୂକ୍ତ ଋକ୍‌ବେଦର ମୂଳ ବା ଆରମ୍ଭ । ଈଶ୍ୱର ନିଜକୁ ପ୍ରକାଶ କରନ୍ତି ଅଗ୍ନି ରୂପରେ, ଅର୍ଥାତ୍ ଅଗ୍ନି ହିଁ ଈଶ୍ୱର । ଅଗ୍ନି ଚକ୍ଷୁର ଅଗୋଚର, ପ୍ରତ୍ୟକ୍ଷ ହେଲେ ନିଏ ଅଷ୍ଟଧା ମୂର୍ତ୍ତି । ଏହି କଥା ବା ତତ୍ତ୍ୱକୁ କାଳିଦାସ ପ୍ରକାଶ କରିଛନ୍ତି :

ଯା ସୃଷ୍ଟିଃ ସ୍ରଷ୍ଟୁରାଦ୍ୟା ବହତି ବିଧିହୁତଂ, ଯା ହବିର୍ଯା ଚ ହୋତ୍ରୀ ।
ଯେ ଦ୍ୱେ କାଳଂ ବିଧତ୍ତ ଶ୍ରୁତିବିଷୟଗୁଣା, ଯା ସ୍ଥିତା ବ୍ୟାପ୍ୟ ବିଶ୍ୱଂ ।
ଯାମାହୁଃ ସର୍ବବୀଜପ୍ରକୃତିମିତି, ଯଯା ପ୍ରାଣିନଃ ପ୍ରାଣବନ୍ତଃ ।
ପ୍ରତ୍ୟକ୍ଷ୍ୟାଭିଃ ପ୍ରପନ୍ନଃ ତନୁଭିରବତୁ ବଃ ତାଭିରଷ୍ଟାଭିରୀଶଃ ।

ଅଣୁ ବା ଈଶ୍ୱର ଚକ୍ଷୁର ଅଗୋଚର । ଅଣୁ ବିରାଟ ଧାରଣ କଲେ ବିଭିନ୍ନ ରୂପରେ ପ୍ରକାଶିତ ହୁଏ । ଈଶ୍ୱରଙ୍କୁ ଦେଖିବା ବା ପ୍ରତ୍ୟକ୍ଷ ରୂପରେ ଉପାସନା କରିବା ଅସମ୍ଭବ । ତେଣୁ ତାଙ୍କର ଅଷ୍ଟଧା ପ୍ରକାଶିତ ପ୍ରକୃତିର ଉପାସନା ଆବଶ୍ୟକ । ସେହି ଅଷ୍ଟଧା ମୂର୍ତ୍ତି ରୂପର ମୂଳ ଅଗ୍ନି । ଅଗ୍ନିର ଉପାସନା ବେଦର ପ୍ରଗୈତିକ ପ୍ରଧାନ ଉପାସନା ।

ଯେତେବେଳେ ସୃଷ୍ଟି ଟିଏ ହୁଏ, ତାହା ହୁଏ ସେହି ମୂଳ (ଦେବତା) ଅଗ୍ନିଙ୍କ ଦ୍ୱାରା ଏବଂ ଲୀନ ହୁଏ ଶୂନ୍ୟରେ ବା ଅଣୁରେ, (ଅର୍ଥାତ୍ ମିଶିଯାଏ ବ୍ରହ୍ମରେ) । ଏହି ଶୂନ୍ୟ ବା ବ୍ରହ୍ମଙ୍କର ଶରୀର ବା ସ୍ୱରୂପ କେତେଦୂର ? ମୂଳ କେଉଁଠି ? କଳ୍ପନାର ଅତୀତ ନିଶ୍ଚୟ ! ଭାରତୀୟ ଦର୍ଶନ ଈଶ୍ୱରଙ୍କୁ ରୂପ ଦେଇ ନାହିଁ, ତାଙ୍କୁ କହନ୍ତି ନିରାକାର ବ୍ରହ୍ମ, ପରମାଣୁର ସମଷ୍ଟି, ଅନନ୍ତ, ଅବ୍ୟକ୍ତ, ଅଭେଦ୍ୟ । ଶୂନ୍ୟର ସୀମା ନିରୂପଣ କର, ଈଶ୍ୱରଙ୍କ ସୀମା ନିରୂପିତ ହେବ । ଗୌତମ ବୁଦ୍ଧଙ୍କ ଦର୍ଶନ ଶୂନ୍ୟବାଦ, କିନ୍ତୁ ଏପର୍ଯ୍ୟନ୍ତ ଏ ଅଧ୍ୟାୟରେ ବର୍ଣ୍ଣିତ ତଥ୍ୟ ବା ଦର୍ଶନର ଅନୁରୂପ କି ନୁହେଁ, ବିଚାର୍ଯ୍ୟ ଅଟେ । ବୁଦ୍ଧଦେବ କି ନୂଆ ଧର୍ମ ଭାରତରେ ପ୍ରଚାର କରିଥିଲେ,

ତାହା ମଧ୍ୟ ବର୍ଣ୍ଣନା ଅଛି । ସେ ଜନ୍ମାନ୍ତର ସ୍ୱୀକାର କରନ୍ତି ନାହିଁ । ଜୀବ ଅଣୁରୁ ଜାତ ହୁଏ ଏବଂ ଅଣୁରେ ଲୀନ ହୁଏ । ଏ ତତ୍ତ୍ୱକୁ ଗୌତମ ଅସ୍ୱୀକାର କରି ନାହାନ୍ତି ।

ଚାର୍ବାକ୍ ଦର୍ଶନ ଆଲୋଡ଼ନ କରି ଗଢ଼ି ଉଠିଛି ଭାରତର ବିଶାଳ ସାହିତ୍ୟ, ବେଦ-ଦର୍ଶନ-ଉପନିଷଦ-ପୁରାଣ । ସେଥିରୁ ବାହାରିଛନ୍ତି କପିଳାଦି ଋଷି, ଚାର୍ବାକ୍, ଗୌତମ, ମହାବୀର, ଚବିଶ ଜୀନ, ଚବିଶ ବୁଦ୍ଧ । ବୌଦ୍ଧ ବା ଜୈନ ଧର୍ମର ପୃଥକ୍ ଅସ୍ତିତ୍ୱ କାହିଁ ? ହିନ୍ଦୁ ଧର୍ମ କାହାକୁ କହନ୍ତି ?

ଭାରତୀୟ ମେଧା ଓ ଚିନ୍ତାଧାରା ଯେତେବେଳେ ଖୋଜୁଥିଲା ଦ୍ୱୈତ ଦର୍ଶନ (ବ୍ରହ୍ମ ଓ ଜୀବ, ବ୍ୟକ୍ତ ଓ ଅବ୍ୟକ୍ତ, ପୁରୁଷ ଓ ପ୍ରକୃତି), ଦାର୍ଶନିକ ଦେଖିଥିଲେ ସେ ପ୍ରକାର ପ୍ରୟାସର ବିଫଳ ରୂପ, ତତ୍ତ୍ୱାନୁସନ୍ଧାନରେ ଫଳାଫଳର ଅଭାବ । ପ୍ରଚାର କଲେ ନିରୀଶ୍ୱରବାଦ ବା ଶୂନ୍ୟବାଦ । କିନ୍ତୁ ଶୂନ୍ୟବାଦହିଁ ଈଶ୍ୱରବାଦ ମଧ୍ୟ; ତେବେହେଁ ଏହା ତତ୍ତ୍ୱ ବା ସତ୍ୟ ସାଧାରଣ ମନୁଷ୍ୟର ଅବଧାର୍ଯ୍ୟ ବା ବୋଧଗମ୍ୟ ନୁହେଁ । ତେଣୁ ଗୌତମ ତାଙ୍କର ଜୀବନର ବାସ୍ତବ ଦିଗକୁ ଏବଂ ତାଙ୍କ ଦର୍ଶନ ପର୍ଯ୍ୟବସିତ ହେଲା ମନୁଷ୍ୟର ଚରିତ୍ରର ବା ପ୍ରତ୍ୟକ୍ଷ ଜୀବନଯାପନ ପ୍ରଣାଳୀର ସ୍ୱରୂପ ଅବଧାରଣରେ । ବିଶାଳ ଅସୀମ ଜ୍ଞାନର ପର୍ଯ୍ୟାଲୋଚନା ଛାଡ଼ି ସେ ଖୋଜିଲେ ସହଜଲଭ୍ୟ ମୁକ୍ତିମାର୍ଗ ନିଷ୍ପାପ ଜୀବନ ଯାପନ । କିନ୍ତୁ ଅରେ ହେଲେ ତାଙ୍କ ମୁଣ୍ଡରେ ପଶି ନ ଥିଲା "ପାପ କଣ ?" "ସତ୍ୟ କଣ—ମିଥ୍ୟା କଣ ?" ଶଙ୍କରଙ୍କ ଦର୍ଶନର କେତେ ତଳେ ଗୌତମ ବୁଦ୍ଧଙ୍କ ଦର୍ଶନ ! ଏହାହିଁ ଗୌତମଙ୍କ ଅପାରଗତା,

ପରିବ୍ରଜ୍ୟ ସ୍ୱୀକାର !!! ଏହାହିଁ ତାଙ୍କ ଦର୍ଶନର ଭିତରରୁ ଲୋପର, ବଳିଷ୍ଠର କରଣ ।

ଯେଉଁ କଥାକୁ ଉପରେ ପରିବ୍ରଜ୍ୟ ବୋଲି କହାଗଲା, ପ୍ରକୃତରେ ତାହା ବିଜୟର ରୂପାନ୍ତର । ଭାରତର ଭୁଙ୍ଗ ମନୀଷା ଏ ପର୍ଯ୍ୟନ୍ତ ନିର୍ଦ୍ଧାରଣ କରି ପାରିନାହିଁ ପ୍ରକୃତସ୍ୱରୂପ ତତ୍ତ୍ୱ । ସର୍ବଦା କହିଆସିଛି 'ନେତି' 'ନେତି' । ସୁତରାଂ ବୌଦ୍ଧିକ ବୁଦ୍ଧ ତତ୍ତ୍ୱାନୁସନ୍ଧାନ ଛାଡ଼ି ଖୋଜିଲେ ; ଦୁଃଖର ବିନାଶ, ଧାର୍ମିକ ଶୃଙ୍ଖଳା ଓ ସୁଖ ବିଧାନ । ପ୍ରତିଷ୍ଠା କଲେ ସାମ୍ୟମୈତ୍ରୀ, ଅହିଂସା, ଦୟା, ତ୍ୟାଗ, ଅପ୍ରମାଦ । ଏହି ତତ୍ତ୍ୱହିଁ ଜୀବଜଗତର କଲ୍ୟାଣ ସାଧନର ଶ୍ରେଷ୍ଠ ସୋପାନ । ପ୍ରକୃତ ଧର୍ମର ମୂଳ ରହିଛି, ନିର୍ମଳ ଅହିଂସ ଜୀବନ-ଯାପନରେ ।

ପ୍ରକୃତ କଥା କହିବାକୁ ଗଲେ, ଭାରତୀୟ କୌଣସି ଧର୍ମର ବା ଧର୍ମମତର ନାମୋଲ୍ଲେଖ ଭାରତୀୟ କୌଣସି ଧର୍ମ ଗ୍ରନ୍ଥରେ ନାହିଁ । ବିଭିନ୍ନ ଋଷିଙ୍କର ବିଭିନ୍ନ ମତବାଦ କେବଳ ଉଦିତ ହୋଇଛି ମାର୍ଗ ବା ଦର୍ଶନ ଆକାରରେ । ଗୌତମ ବୁଦ୍ଧ ଓ ମହାବୀର ଜୀନଙ୍କ ପ୍ରଚାରିତ ଦର୍ଶନ କଥିତ ହୋଇଛି ଶୂନ୍ୟବାଦ ବା ନିରୀଶ୍ୱରବାଦ ନାମରେ । ଶଙ୍କରାଦି ମହାତ୍ମାଗଣ ବିରୋଧ କଲେ ଏହି ଶୂନ୍ୟବାଦର, ଯେହେତୁ ନିରୀଶ୍ୱରବାଦ ନିରବଲମ୍ବ ଏବଂ ନାସ୍ତିକତାର ପ୍ରଖ୍ୟାପକ, ସୁତରାଂ ସମାଜର କ୍ଷତିକାରକ । ଶୂନ୍ୟବାଦର ସ୍ଥାନ ପୃଥିବୀରେ ନାହିଁ, ଏବଂ ବିଶେଷତଃ ଭାରତବର୍ଷରେ ନାହିଁ ।

'ହିନ୍ଦୁସ୍ଥାନ', 'ହିନ୍ଦୁଜାତି' ଓ 'ହିନ୍ଦୁଧର୍ମ' ଅତି ଆଧୁନିକ ନାମକରଣ । ନବାଗନ୍ତୁକ ଗ୍ରୀକ୍, ପାରସିକ, ମୁସଲମାନ ଓ ଫିରିଙ୍ଗି-

ମାନେ ଏହି ନାମକରଣ କରିଛନ୍ତି । ପ୍ରକୃତରେ ଭାରତରେ ହିନ୍ଦୁ, ଜୈନ ଓ ବୌଦ୍ଧ ନାମରେ ତିନି ଧର୍ମ ନ ଥିଲା କିମ୍ବା ତିନି ଧର୍ମାବଲମ୍ବୀ ନ ଥିଲେ । କୌଣସି ଖ୍ରୀଷ୍ଟାନ ବା ମୁସଲମାନ ଧର୍ମାବଲମ୍ବୀଙ୍କୁ ଭାରତୀୟମାନେ ତଥାକଥିତ 'ହିନ୍ଦୁଧର୍ମାବଲମ୍ବୀ' ରୂପେ କେବେ ଗ୍ରହଣ କରି ନ ଥିଲେ । କିନ୍ତୁ କେତେ ବୈଦେଶିକ ଏମାନେ ଧର୍ମରେ ଲୀନ ହୋଇଛନ୍ତି, ତାହାର ଇୟତ୍ତା ଅଛି କି ?

"ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତଂ ।
ସଦୟହୃଦୟଦର୍ଶିତପଶୁଘାତଂ ।
କେଶବଧୃତ ବୁଦ୍ଧଶରୀର ଜୟ ଜଗଦୀଶ ହରେ ।"

ଯେଉଁ ଭାରତ ଗୌତମବୁଦ୍ଧଙ୍କୁ ଗ୍ରହଣ କରେ ବିଷ୍ଣୁଙ୍କ ଅବତାର ରୂପେ, ତାଙ୍କ ଦର୍ଶନ ଭାରତୀୟ ଦର୍ଶନର ବାହାରେ ନୁହେଁ । ବୁଦ୍ଧଙ୍କ ଦର୍ଶନତତ୍ତ୍ୱ ବା ଜୀବହିଂସା ନିଷେଧାଜ୍ଞା ସମଗ୍ର ଭାରତ ମାନିନେଇଛି । ଭାରତର ପ୍ରତ୍ନତତ୍ତ୍ୱ ମାନେ ବୌଦ୍ଧ; ଭାରତରେ ହିନ୍ଦୁ ନାହାନ୍ତି, କିମ୍ବା ହିନ୍ଦୁ ଧର୍ମ ନାହିଁ ।

ମହାଭାରତ ଓ ଭଗବଦ୍‌ଗୀତା ମଧ୍ୟ ବୌଦ୍ଧ ଅହିଂସା-ନୀତିକୁ ଗ୍ରହଣ କରିନେଇଛନ୍ତି ଏବଂ ତାହାର ପ୍ରବଳ ପ୍ରଚାର କରିଛନ୍ତି । 'ଦମସ୍ତ୍ୟାଗୋଽପ୍ରମାଦଃ', 'ଅହିଂସାସତ୍ୟମକ୍ରୋଧଃ', ଗୀତାର ପ୍ରଧାନ ପ୍ରତିପାଦ୍ୟ ବିଷୟ । ପଶୁବଧ ଯଜ୍ଞ ପରିବର୍ତ୍ତରେ ଗୀତା ପ୍ରଚାର କରିଛି ଜ୍ଞାନଯଜ୍ଞ ଓ କର୍ମଯୋଗ ।

"ଜ୍ଞାନଯଜ୍ଞେନ ଚାପ୍ୟନ୍ୟେ ଯଜନ୍ତୋ ମାମୁପାସତେ ।
ଏକତ୍ୱେନ ପୃଥକ୍ତ୍ୱେନ ବହୁଧା ବିଶ୍ୱତୋମୁଖଂ ।

ଅହଂ କ୍ରତୁଃ ଅହଂ ଯଜ୍ଞଂ ସ୍ୱଧାହଂ ଅହଂ ଔଷଧଂ ।
ମନ୍ତ୍ରୋଽହଂ ଅହମେବାଜ୍ୟଂ ଅହମଗ୍ନିଃ ଅହଂ ହୁତଂ ।
(ଭଗବଦ୍‌ଗୀତା—ନବମୋଽଧ୍ୟାୟଃ-୧୬)

"ବ୍ରହ୍ମାର୍ପଣଂ ବ୍ରହ୍ମହବିର୍ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତଂ ।
ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମକର୍ମ ସମାଧିନା ।"
(ଭଗବଦ୍‌ଗୀତା-ଚତୁର୍ଥୋଽଧ୍ୟାୟଃ-୨୪)

"ଅହିଂସା ସତ୍ୟମକ୍ରୋଧସ୍ତ୍ୟାଗଃ ଶାନ୍ତିରପୈଶୁନଂ ।
ଦୟାଭୂତେଷ୍ୱଲୋଲୁପ୍ତ୍ୱଂ ମାର୍ଦ୍ଦବଂ ହ୍ରୀରଚାପଳଂ ।
(ଭଗବଦ୍‌ଗୀତା-ଷୋଡ଼ଶୋଽଧ୍ୟାୟଃ-୨)

ଅଶୋକ ଓ ଖାରବେଳ ବ୍ରାହ୍ମଣମାନଙ୍କୁ ଦାନ ଦେଇଛନ୍ତି ଏବଂ ସେକଥା ଲେଖି ଯାଇଛନ୍ତି ପ୍ରସ୍ତର ଗାତ୍ରରେ । ସେମାନଙ୍କ ବିଚାରରେ ତାଙ୍କର ଉଭୟ ମତବାଦ ବା ଦର୍ଶନ ମଧ୍ୟରେ କଳିବିବାଦ ନ ଥିଲା, ଉଭୟ ମତବାଦୀ ଏକତ୍ର ବାସ କରୁଥିଲେ ପରସ୍ପର ସଖ୍ୟରେ । ଖାରବେଳ ବଜ୍ରଯୁଦ୍ଧ ଚଙ୍ଗର ଅନୁଧ୍ୟାନ କରିଥିଲେ । ସେ ଜୈନ ଦର୍ଶନବାଦୀ ହେଲେ ମଧ୍ୟ ଜୈନ ଧର୍ମାବଲମ୍ବୀ ନ ଥିଲେ । ହାତୀଗୁମ୍ଫା ଶୈଳଲେଖରୁ ଜଣାଯାଏ ଯେ ସେ ଅନେକ ଦେବମନ୍ଦିର ନିର୍ମାଣ କରିଥିଲେ ।

ଭାରତୀୟ ମହାଧର୍ମ ବୌଦ୍ଧ ଓ ଜୈନଦର୍ଶନବାଦୀମାନଙ୍କୁ ନିଜ ମତବାଦ ମଧ୍ୟରେ ମିଶାଇ ନେଇଛି । ଅସଂଖ୍ୟ ବୌଦ୍ଧ ଓ

ଜୈନ ଦର୍ଶନବାଦୀ ସନାତନ ଭାରତୀୟ ମହାଧର୍ମର ବେଷ୍ଟନୀ ମଧ୍ୟରେ ମିଶି ଯାଇଛନ୍ତି ।

ବିଶାଳ ବୈଦିକ ଦେଶର ଖାରବେଳ ଚେଦୀ ବଂଶରେ ରାଜା ଥିଲେ ଦମଘୋଷ, ତାଙ୍କପୁତ୍ର ଶିଶୁପାଳ ଏବଂ ଶିଶୁପାଳଙ୍କ ପୁତ୍ର ସୌଭରାଜ । ସେମାନଙ୍କ ରାଜଧାନୀ ଥିଲା ଶୁକ୍ତିପୁର । ଶୁକ୍ତିମତୀ ନଦୀକୂଳରେ ଓ ଶୁକ୍ତିମାନ ପର୍ବତ ନିକଟରେ ଏହି ଶୁକ୍ତିପୁର ଅବସ୍ଥିତ ଥିଲା । ମହାଭାରତ ଭୀଷ୍ମପର୍ବ ନବମ ଅଧ୍ୟାୟର ଏକାଦଶ ଶ୍ଳୋକର ବର୍ଣ୍ଣନା ମତେ ମହେନ୍ଦ୍ର, ମଳୟ, ସହ୍ୟ, ଶୁକ୍ତିମାନ, ଋକ୍ଷବାନ୍ ବା ଗନ୍ଧମାଦନ, ବିନ୍ଧ୍ୟ ଓ ପାରିପାତ୍ର ଏହି ସାତ କୁଳାଚଳ । ଏମାନେ ଭାରତର ଗାର୍ଥା * ।

* ମହେନ୍ଦ୍ରୋ ମଳୟଃ ସହ୍ୟଃ ଶୁକ୍ତିମାନ୍ ଗନ୍ଧମାଦନଃ ।
ବିନ୍ଧ୍ୟାଶ୍ଚ ପାରିପାତ୍ରଶ୍ଚ ସପ୍ତୈତେ ଚ କୁଳାଚଳାଃ ।
(ମହାଭାରତ—ଭୀଷ୍ମପର୍ବ—ନବମ ଅଧ୍ୟାୟ—ଏକାଦଶ ଶ୍ଳୋକ ଏବଂ ବିକାଶ ଶେଷ)

ସପ୍ତକୁଳାଚଳ ଭାରତବର୍ଷରେ ଅର୍ଥାତ୍ ମହାରାଷ୍ଟ୍ର, ମହାକାନ୍ତାର ଓ ମହାକୋଶଳ ମଧ୍ୟରେ ଥିଲା ।

ବିନ୍ଧ୍ୟ—ପ୍ରଧାନ ବିନ୍ଧ୍ୟମୂଳ (ମାଳବ ନର୍ମଦା ମଧ୍ୟରେ)
ସହ୍ୟ—ପଶ୍ଚିମ ଘାଟ (କୃଷ୍ଣା ତାପ୍ତୀ ମଧ୍ୟରେ)
ପାରିପାତ୍ର—ସାତପୁରା (?) (ନର୍ମଦା-ତାପ୍ତୀ ମଧ୍ୟରେ)
ମଳୟ—ମଳୟଗିରି (ପାଲଲହଡ଼ା-କେନ୍ଦୁଝର-ମୟୂରଭଞ୍ଜରେ)
ମହେନ୍ଦ୍ର—ମହେନ୍ଦ୍ରଗିରି (ଗଞ୍ଜାମ-ପାରଳାଖେମୁଣ୍ଡିରେ)

(ପର ପୃଷ୍ଠା ଦେଖ)

ଶାଶ୍ୱତ ଚେଡ ବଂଶର ଏକ ଶାଖା ଐଲଚେଦୀ ବା ଐର ଚେଡମାନେ । ଅଶୋକଙ୍କ ପ୍ରତିପକ୍ଷ ଏହି ବଂଶର ରାଜାଙ୍କ ନାମ

(ପୂର୍ବ ପୃଷ୍ଠା ପରେ)

ଗନ୍ଧମାଦନ—ଗନ୍ଧମାଦନଗିରି (ସମ୍ବଲପୁର ବୋଲାଙ୍ଗିରରେ—ନରସିଂହନାଥ ପାହାଡ଼)

ଶୁକ୍ତିମାନ—ମଇନବାଡ଼ ପର୍ବତ (ସୁରଗୁଜା-ଶକ୍ତି-କୋରିଆ-ଯଶପୁର-ଉଦୟପୁରକୁ ବ୍ୟାପିଥିବା ପର୍ବତଶ୍ରେଣୀ)

ଏହି ସମସ୍ତ ଅଞ୍ଚଳରେ ଅସଂଖ୍ୟ ପ୍ରାଚୀନ ଐତିହାସିକ କୀର୍ତ୍ତି ରହିଅଛି । ଭୁବନେଶ୍ୱରଙ୍କ ବର୍ଣ୍ଣିତ ପୁଷ୍ପଗିରି କୋଷ୍ଠାମରେ ଏବଂ ପରିମଳଗିରି କେନ୍ଦୁଝରରେ ଥିଲା ।

ତିବ୍ବତର ବୌଦ୍ଧଗ୍ରନ୍ଥମାନଙ୍କରେ କେନ୍ଦୁଝର ଜହର ରାଜ୍ୟ ରୂପେ ବର୍ଣ୍ଣିତ ହୋଇଛି । ତହିଁରୁ ଜଣାଯାଏ ଯେ କେନ୍ଦୁଝର ଏକ ଖ୍ୟାତ ବୌଦ୍ଧପୀଠ ଥିଲା । କେନ୍ଦୁଝର ବଡ଼େ ଥିଲା ଦୁଇ ଅଞ୍ଚଳରେ: କେନ୍ଦୁଜହର ଓ କଣ୍ଟାଜହର । 'ଜହର' ଶବ୍ଦ ପରିଣତ ହୋଇଛି 'ଝର'ରେ । କେନ୍ଦୁଝର ଅନ୍ତଃପାତୀ ଆନନ୍ଦପୁରରୁ ଦଶ ମାଇଲ ଦୂରରେ ବୈଦଖିଆ ଗ୍ରାମର ଦକ୍ଷିଣପଶ୍ଚିମରେ ପ୍ରାୟ ଦେଢ଼ ମାଇଲ ବ୍ୟବଧାନରେ ଏକ ବିଶାଳ ସ୍ତୂପ ଅଛି । ସ୍ତୂପ ନିକଟରେ ଗୁଡ଼ିଏ ପ୍ରକାଣ୍ଡ ଜଳାଶୟର ଚିହ୍ନ ଏବଂ ଅନେକ ଦେବମନ୍ଦିର ଓ ବୌଦ୍ଧ ବା ଜୈନ ମୂର୍ତ୍ତିର ଭଗ୍ନାବଶେଷ ଦେଖାଯାଏ । କେତେକ ମୂର୍ତ୍ତି ପାଞ୍ଚ ଫୁଟ ଉଚ୍ଚ । ଗୋଟିଏ ଗଛ-ଗଣ୍ଡିରେ ପଦ୍ମାସନାସୀନ ଆହୁରି ଏକ ଜୈନ ବା ବୌଦ୍ଧ ମୂର୍ତ୍ତି ଅଛି ଏବଂ ନିକଟରେ ଏକ ନଗ୍ନ ତୀର୍ଥଙ୍କର ମୂର୍ତ୍ତି ଅଛି । ଏହି ମୂର୍ତ୍ତି କଳେବରରେ ଖୋଦିତ ଅକ୍ଷର ବିଶିଷ୍ଟ ଏକ ବ୍ରାହ୍ମୀଲିପି ଅଛି । ଏ ସମସ୍ତ ଉତ୍କଳପାହାଡ଼ ଶ୍ରେଣୀର 'ଯୋଗୀମଠ' ନାମକ ସ୍ଥାନରେ

(ପର ପୃଷ୍ଠା ଦେଖ)

ଏପର୍ଯ୍ୟନ୍ତ ଜଣାଯାଇ ନାହିଁ । ସେ ସମ୍ଭବତଃ କଳିଙ୍ଗ ଯୁଦ୍ଧପରେ ସ୍ଥାୟୀ ବନ୍ଦର କୋଶଳରାଜଙ୍କ ରାଜଧାନୀ ତୋଷଳୀକୁ ହଟି ଯାଇଥିଲେ । ତୋଷଳୀକୁ ଟଲେମି ବର୍ଣ୍ଣନା କରିଛନ୍ତି ଟୋସଲି ନାମରେ । ମେଗାସ୍ଥିନିସଙ୍କ ବର୍ଣ୍ଣନା ଅନୁଯାରେ କଳିଙ୍ଗରାଜଙ୍କ ଥିଲେ ଛଅ ଅଯୁତ ପଦାତି, ଏକ ହଜାର ଅଶ୍ୱାରୋହୀ ଓ ସାତ ଶହ ହସ୍ତୀ ଏବଂ କୋଶଳରାଜଙ୍କ ଥିଲେ ପାଞ୍ଚ ଅଯୁତ ପଦାତି, ତିନି ହଜାର ଅଶ୍ୱ ଓ ତିନିଶହ ହସ୍ତୀ ।

(ପୂର୍ବ ପୃଷ୍ଠା ପରେ)

ଅବସ୍ଥିତ ! ମନ୍ଦିର ପାଦ ଦେଶରୁ ପାହାଡ଼ ଶିଖରକୁ ପୁରାତନ ଇଟା ଓ ପଥରର ସୋପାନ ଶ୍ରେଣୀ ଲାଗିଛି । ପାହାଡ଼ଶିଖରରେ ଏକ ପ୍ରକାଣ୍ଡ ବୌଦ୍ଧ ବା ଜୈନ ମୂର୍ତ୍ତି ଏବଂ ଚିରସଲିଳ ଜଳାଶୟ ଅଛି । ଯୋଗୀଛତର ତିନି ଦିଗରେ ଉଚ୍ଚ ପାହାଡ଼ ଏବଂ ଚତୁର୍ଥ ଦିଗରେ ଏକ ଉଚ୍ଚ ପ୍ରାଚୀରର ଭଗ୍ନାବଶେଷ । ଯୋଗୀଛତର ଦୈର୍ଘ୍ୟପ୍ରସ୍ଥ ମାଇଲେ ଲେଖା । ତତ୍ପଶ୍ଚାତ ଚକ୍ରତୀର୍ଥ ନାମକ ବୃହତ୍ କୁଣ୍ଡ ନିକଟରେ ଦୁଇ ରାଜପଥାନ୍ତ ଦିନ ଏକ ମେଳା ଓ ପଶୁବଳି ହୁଏ । ଦଶ ପନ୍ଦର ବର୍ଷ ପୂର୍ବେ ଏଠା ମାଟି ଭିତରୁ ଏକ ପ୍ରସ୍ତରସ୍ତମ୍ଭ ମିଳିଛି । ପ୍ରସ୍ତରସ୍ତମ୍ଭକୁ ଏକ ଲୌହଦଣ୍ଡ ମଝିରେ ଧରିଛି । ସ୍ତମ୍ଭଟି ଆନନ୍ଦପୁର କଚେରୀ ଘରେ * ରକ୍ଷିତ ହୋଇଛି ।

ଶୁ ଉପୁର ମଧ୍ୟପ୍ରଦେଶ ଅନ୍ତଃପାତୀ ରାୟଗଡ଼ ଜିଲ୍ଲାସ୍ଥ ଆଧୁନିକ ଶକ୍ତି ଅଞ୍ଚଳରେ ଏକ ବଧିସ୍ତ ବା ବପର୍ଯ୍ୟସ୍ତ ପ୍ରାଚୀନ ନଗର ହୋଇଥିବାର ସମ୍ଭବ ।

* Kalinga Historical Research Society Journal —Vol. II and III, PP. 225-226— Sri Banambar Acharya.

ବାୟୁ ପୁରାଣ ମତରେ ନଅ ଜଣ ରାଜା କୋଶଳରେ ରାଜତ୍ୱ କରିଥିଲେ । ଏମାନେ ମେଘ ବଂଶ ନାମରେ ଖ୍ୟାତ । ଏହି ନଅ ଜଣ ରାଜା ରାଜତ୍ୱ କରିଥିବେ ଅନ୍ତତଃ ଅଢ଼େଇ ଶହ ବର୍ଷ * ।

ଖ୍ରୀଷ୍ଟପୂର୍ବ ୨୩୨ ରେ ଅଶୋକଙ୍କ ମୃତ୍ୟୁର ଅବ୍ୟବହିତ ପରେ ଅଶୋକଙ୍କ ପ୍ରତିପକ୍ଷ କଳିଙ୍ଗରାଜ ବା ତାଙ୍କ ପୁତ୍ର ମୌର୍ଯ୍ୟ-ମାନଙ୍କୁ କଳିଙ୍ଗରୁ ତଡ଼ିଦେଲେ । ଖ୍ରୀଷ୍ଟପୂର୍ବ ୧୮୪ ରେ ପୁଷ୍ୟମିତ୍ର ପୁଙ୍ଗ ମୌର୍ଯ୍ୟମାନଙ୍କୁ ମଗଧରୁ ତଡ଼ିଦେଲେ । ପୁଷ୍ୟମିତ୍ରଙ୍କ ମଗଧ ଅଧିକାର ପୂର୍ବେ ବୃହସ୍ପତି ମିତ୍ର ମଗଧର ରାଜା ଥିଲେ । ବୃହସ୍ପତି ମିତ୍ରଙ୍କ ରାଜତ୍ୱରେ ଖାରବେଳ ନିଜ ରାଜତ୍ୱର ଅଷ୍ଟମ ଓ ଦ୍ୱାଦଶ ବର୍ଷରେ ମଗଧ ଆକ୍ରମଣ କରିଥିଲେ । ଯଦି ଖାରବେଳ ପୁଷ୍ୟମିତ୍ରଙ୍କ ମଗଧ ଅଧିକାରର ପ୍ରାୟ ଦଶବର୍ଷ ପୂର୍ବେ ମଗଧ ଆକ୍ରମଣ କରିଥିଲେ, ତାଙ୍କ ରାଜତ୍ୱ ଆରମ୍ଭ ହୋଇଥିବ ପ୍ରାୟ ଖ୍ରୀଷ୍ଟପୂର୍ବ ୨୦୬ ବେଳକୁ । ତାଙ୍କର ଜନ୍ମ ହୋଇଥିବ ଖ୍ରୀଷ୍ଟପୂର୍ବ ପ୍ରାୟ ୨୩୦ ରେ । ସୁତରାଂ ଚେତବଂଶୀୟ ରାଜା ବା ଖାରବେଳଙ୍କ ପିତା କଳିଙ୍ଗ ପୁନରୁଦ୍ଧାର କରିଥିଲେ ଅଶୋକଙ୍କ ମୃତ୍ୟୁର ଅବ୍ୟବହିତ ପରେ ବା ଖ୍ରୀଷ୍ଟପୂର୍ବ ପ୍ରାୟ ୨୩୦ ରେ । କଳିଙ୍ଗ ପ୍ରାୟ ୩୦।୩୫ ବର୍ଷ ପରାଧୀନ ରହିଥିଲା ।

କୋଶଳର ରାଜବଂଶର ନାମ (ବା ଉପାଧି) ଥିଲ "ମେଘ" । ମେଘ ଶବ୍ଦର ଅର୍ଥ ବୃଷ୍ଟି । କଳିଙ୍ଗର ଚେତ ରାଜାମାନେ ବୋଲଉ-

* କୋଶଳାୟାଂ ତୁ ରାଜାନୋ ଭବିଷ୍ୟନ୍ତି ମହାବଳାଃ ।
'ମେଘାଃ' ଇତି ସମାଖ୍ୟାତା ବୁଦ୍ଧିମନ୍ତଃ ନବୈବ ତୁ ।
(ବାୟୁପୁରାଣ, ନବମ ଅଧ୍ୟାୟ, ୩୪୭ ଶ୍ଳୋକ)

ଥିଲେ 'ମେଘବାହନ' । ମେଘବାହନ ଶବ୍ଦର ଅର୍ଥ ଶିବ । ସମ୍ରାଟ୍ ଖାରବେଳ ନିଜକୁ ବର୍ଣ୍ଣନା କରିଛନ୍ତି "ମହାମେଘବାହନ" ନାମରେ (ବା ବଂଶରେ) । ଏଥିରୁ ବୁଝାଯିବ, ଚେତବଂଶୀୟ ରାଜାମାନେ ତଥା ଖାରବେଳ ଶିବୋପାସକ ଥିଲେ ଏବଂ ଖାରବେଳ ନିଜେ ଶିବମନ୍ଦିର ତୋଳାଇଥିଲେ । ଏହି ବଂଶର ପ୍ରଭବ ବୁଧ ଓ ଇଲା-ଠାରୁ । ତେଣୁ ଏହି ବଂଶ ସୋମବଂଶୀ କ୍ଷତ୍ରିୟ * ଥିଲେ ।

ପ୍ରସ୍ତୁରୀ ବା ପୃଥୁଦକ ଏହି ବଂଶର ପ୍ରାଚୀନ କଳିଙ୍ଗର ରାଜଧାନୀ ଥିଲା । ପ୍ରସ୍ତୁରୀ ବା ପୃଥୁଦକକୁ ମେଗାସ୍ଥେନିସ ପର୍ଥଲିସ ବୋଲି ବର୍ଣ୍ଣନା କରିଅଛନ୍ତି । ପର୍ଥଲି ଭୂଗର୍ଭରେ ଲୋପ ହୋଇଥିଲା ଏବଂ ୧୧୩ ବର୍ଷ ପରେ ତାହାକୁ ଖାରବେଳ ନିଜ ରାଜତ୍ୱର ଏକାଦଶ

* ଦ୍ୱାବିଂଶସ୍ତୁ ତଥା କଲ୍ପୋ ବଜ୍ରେୟୋ ମେଘବାହନଃ ।
ଯତ୍ର ବିଷ୍ଣୁଃ ମହାବାହୁଃ ମେଘୀଭୂତ୍ୱା ମହେଶ୍ୱରଂ ।୫୦।
ଦିବ୍ୟଂ ବର୍ଷଂ ସହସ୍ରଂ ତୁ ଅବହତ୍ କୃତ୍ତିବାସସଂ ।
ତସ୍ୟ ନିଶ୍ୱସ୍ୟମାନସ୍ୟ ଭବକ୍ରାନ୍ତସ୍ୟ ବୈ ମୁଖାତ୍ ।୫୧।
ନିର୍ଜଗାମ ମହାବାୟୁଃ ବାଲୋ ଲୋକପ୍ରକାଶନଃ ।
ଯସ୍ମାତ୍ତୁ ଂ ପଠ୍ୟତେ ବସ୍ତ୍ରେଃ ବିଷ୍ଣୁଃ ବୈ ଭଗ୍ୟପାମ୍ବଜଃ ।୫୨।
(ବାୟୁପୁରାଣ—ଏକବିଂଶ ଅଧ୍ୟାୟ)

('ମେଘବାହନ ନାମକ ଦ୍ୱାବିଂଶତ୍ କଲ୍ପରେ ବିଷ୍ଣୁ ମେଘ ରୂପ ଧାରଣ କରି ଶିବଙ୍କୁ ବହନ କରିଥିଲେ । ତେଣୁ ବିଷ୍ଣୁଙ୍କୁ "ମେଘ" ଏବଂ ଶିବଙ୍କୁ "ମେଘବାହନ" କହାଯାଏ ।

ସମ୍ଭବତଃ କୋଶଳର ମେଘବଂଶ ବୈଷ୍ଣବ ଏବଂ କଳିଙ୍ଗର ଚେତବଂଶ ଶୈବ ଥିଲେ ।

ବର୍ଷରେ ପୁନରୁଦ୍ଧାର କରିଥିଲେ । ଚେଦିବଂଶ କେତେ କାଳ କଳିଙ୍ଗରେ ରାଜତ୍ୱ କରିଥିଲେ, ତାହା ନିରୂପଣ କରିବା କଠିନ । ମେଗାସ୍ଥିନିସଙ୍କ ପୂର୍ବରୁ ଅନ୍ତତଃ ଶହେ ବର୍ଷ ସେମାନେ ପିଥୁଣ୍ଡରେ ରାଜତ୍ୱ କରିଥିଲେ ।

ପୃଥୁଦକ ଓ ଶିଶୁପାଳ ଗଡ଼ଦ୍ୱୟ ଭୂଗର୍ଭରେ ପୋତି ହୋଇଥିଲ । ଏଥିରୁ ପୁରାକାଳୀୟ ନଗରୀମାନଙ୍କର ଗଠନ ଓ ପ୍ରକୃତି ପରିବର୍ତ୍ତନ ବୁଝାପଡ଼ିବ ।

ହାତୀଗୁମ୍ଫା ଅନୁଶାସନରେ ବର୍ଣ୍ଣିତ ଖାରବେଳଙ୍କ ଜୀବନ-କାଳର ସମ୍ଭାବ୍ୟ ଘଟନାବଳୀ ନିମ୍ନରେ ପ୍ରଦତ୍ତ ହେଲ :—

ଖ୍ରୀ: ପୂ: ୨୩୦—ଖାରବେଳଙ୍କ ଜନ୍ମ । କଳିଙ୍ଗର ସ୍ୱାଧୀନତା ।
ଖ୍ରୀ: ପୂ: ୨୧୭—ଯୁବରାଜ ଖାରବେଳ ।
ଖ୍ରୀ: ପୂ: ୨୦୭—ଖାରବେଳଙ୍କ ଅଭିଷେକ ।
ଖ୍ରୀ: ପୂ: ୨୦୫—ଖାରବେଳଙ୍କ ଆନ୍ଧ୍ର ଆକ୍ରମଣ ।
ଖ୍ରୀ: ପୂ: ୨୦୦—ଖାରବେଳଙ୍କ ରଠିକ ଓ ଭୋଜକ ଆକ୍ରମଣ ।
ଖ୍ରୀ: ପୂ: ୧୯୮—ଖାରବେଳଙ୍କ ରାଜସୂୟ ଯଜ୍ଞ ।
ଖ୍ରୀ: ପୂ: ୧୯୭—ଖାରବେଳଙ୍କ ମଗଧ ଆକ୍ରମଣ ଓ ଗୋରଥଗିରି ଯୁଦ୍ଧ ।
ଖ୍ରୀ: ପୂ: ୧୯୪—ଖାରବେଳଙ୍କ ଉତ୍ତର ଭାରତ ଆକ୍ରମଣ ।
ଖ୍ରୀ: ପୂ: ୧୯୨—ମୌର୍ଯ୍ୟବଂଶୀୟ ବୃହସ୍ପତି ମିତ୍ରଙ୍କ ପରାଜୟ ଏବଂ ପାଟଳିପୁତ୍ରର ସୁଗାଙ୍ଗେୟ ରାଜପ୍ରାସାଦ ଖାରବେଳଙ୍କ ଦ୍ୱାରା ଅଧିକୃତ ।
ଖ୍ରୀ: ପୂ: ୧୯୧—କୁମାରୀ ପର୍ବତରେ ଖାରବେଳଙ୍କ ଗୁମ୍ଫାନିର୍ମାଣ ।

ଖାରବେଳଙ୍କ ବାଲ୍ୟାବସ୍ଥା ପରେ ତାଙ୍କୁ ଲେଖ (ରାଜାଜ୍ଞା-ପତ୍ରଲେଖନ), ରୂପ (ଅର୍ଥନୀତି), ଗଣନା (ଆୟବ୍ୟୟ ହିସାବ), ବ୍ୟବହାର (ନ୍ୟାୟମୂଳକ ପ୍ରଣୋଦିତ ବିଚାର ବ୍ୟବସ୍ଥା) ଓ ବିଧି (ରାଜ୍ୟଶାସନ) ଶିକ୍ଷା ଦେବା ନିମନ୍ତେ ପ୍ରବୀଣ ପଣ୍ଡିତମାନେ ନିଯୁକ୍ତ ହୋଇଥିଲେ । ପଞ୍ଚଦଶ ବର୍ଷ ବୟସରେ ସେ ଯୁବରାଜ ରୂପେ ନିଯୁକ୍ତ ହେଲେ । ଯୁବରାଜ ରୂପେ ପ୍ରତ୍ୟକ୍ଷ ବ୍ୟାବହାରିକ ଶିକ୍ଷା ପାଇବା ଲଗି ଉକ୍ତ ପ୍ରବୀଣ ପଣ୍ଡିତମାନଙ୍କ ତତ୍ତ୍ୱାବଧାନରେ ନଅ ବର୍ଷକାଳ ସେ ରାଜ୍ୟର ବିଭାଗମାନଙ୍କର ବ୍ୟବସ୍ଥା ବା ପରିଚାଳନା ବୁଝିଲେ । ତୋଥିଗତ ନ ଥିଲା ତାଙ୍କର ଶିକ୍ଷା । ପ୍ରତ୍ୟକ୍ଷ କାର୍ଯ୍ୟ-କ୍ଷେତ୍ରରେ ସେ ଅଧ୍ୟାନୁଷ୍ଠାନମୂଳକ ଅଭିଜ୍ଞତା ଓ ପାରଦର୍ଶିତା ଲାଭ କରିଥିଲେ । ହେଉ କାର୍ଯ୍ୟର ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିବା ନିମନ୍ତେ ସେ ମନ୍ତ୍ରୀ, କୋଷାଧ୍ୟକ୍ଷ, ସଂଗ୍ରାହକ, ସେନାପତି ଆଦି ସମସ୍ତଙ୍କର କାର୍ଯ୍ୟର ତତ୍ତ୍ୱାବଧାନ କରୁଥିଲେ । ପୂର୍ବେ ରାଜକୁମାର ଓ ରାଜକୁମାରମାନଙ୍କର ଶିକ୍ଷାର ରୂପରେଖ କି ପ୍ରକାର ଥିଲା, ତାହା ଖାରବେଳଙ୍କ ଜୀବନରୁ ବୁଝାପଡ଼ିବ ।

ଚତୁର୍ବିଂଶତି ବର୍ଷ ବୟଃକ୍ରମ କାଳରେ ତାଙ୍କର ଅଭିଷେକ ହେଲା ଏବଂ ସେ କଳିଙ୍ଗର ଦଣ୍ଡଧର ହେଲେ । ତାଙ୍କ ଅଭିଷେକର କିଛି ପୂର୍ବେ ରାଜଧାନୀର ଦୁର୍ଗପ୍ରାଚୀର, ନିବେଶନ, ଗୋପୁର, ପୁଷ୍କରିଣୀ, ପ୍ରଣାଳୀ, ଉଦ୍ୟାନ ସମସ୍ତ ପ୍ରବଳ ଝଟିକାବର୍ଷା ଯୋଗେ ବିନଷ୍ଟ ହୋଇଥିଲା । ରାଜା ହେବା ମାତ୍ରେ ସେ ୩୫ ଲକ୍ଷ ମୁଦ୍ରାବ୍ୟୟରେ ସେସବୁର ସଂସ୍କାର ଓ ପୁନରୁଦ୍ଧାର କଲେ ।

ନାସିକ ଓ ତାପ୍ତୀ ନଦୀ ମଧ୍ୟରେ ରଷ୍ଟ୍ରିକମାନଙ୍କର ରାଜ୍ୟ ଥିଲ । ରଷ୍ଟ୍ରିକ ରାଜ୍ୟର ପୂର୍ବକୁ ଭୋଜକ ରାଜ୍ୟ ଥିଲ * । ପୈଠାନ (ପ୍ରତିଷ୍ଠାନ)ର ଚତୁଃପାର୍ଶ୍ୱରେ ଅଶ୍ମକ ରାଜ୍ୟ ବା ପିତେନିକମାନଙ୍କର ରାଜ୍ୟ ଥିଲ § । ଗୋଦାବରୀ ଓ ଉତ୍ତର ପେନାର ମଧ୍ୟରେ ଆନ୍ଧ୍ର ରାଜ୍ୟ ଥିଲ । କଳିଙ୍ଗର ଚେତିବଂଶର 'ମେଘବାହନ' ବିରୁଦ ପରି ଆନ୍ଧ୍ର ରାଜବଂଶର 'ଶାତବାହନ' (ସାତ୍ୱବାହନ ?) ବିରୁଦ ଥିଲ । ଆନ୍ଧ୍ରମାନେ ଗୋଦାବରୀ-କୃଷ୍ଣା ମଧ୍ୟବର୍ତ୍ତୀ ପ୍ରଦେଶରେ ଅନେକ କାଳରୁ ରାଜତ୍ୱ କରୁଥିଲେ । ରଷ୍ଟ୍ରିକ, ଭୋଜକ, ପିତେନିକ ଓ ଆନ୍ଧ୍ରମାନେ ମୌର୍ଯ୍ୟ ସମ୍ରାଟଙ୍କ ସାମନ୍ତ ରାଜା ଥିଲେ । ଅଶୋକଙ୍କ ପରେ ସମସ୍ତେ ସ୍ୱାଧୀନତା ଘୋଷଣା କରିଥିଲେ ।

'ସାତ୍ୱତବାହନ' ହେଉର ରୂପାନ୍ତର 'ଶାତବାହନ' ହେବ । ଶ୍ରୀକୃଷ୍ଣଙ୍କ ଯାଦବ ବଂଶର ନାମ 'ସାତ୍ୱତ' ‡ । ଶ୍ରୀକୃଷ୍ଣଙ୍କ ଯାଦବ ବଂଶର ଗୋପୀମାନଙ୍କୁ କହାଯାଏ 'ଅନ୍ଧକ' । 'ଆନ୍ଧ୍ର' ହେଉ ଆସିଅଛି 'ଅନ୍ଧକ' ହେଉ । ସୁତରାଂ ଆନ୍ଧ୍ର ରାଜବଂଶ ଥିଲେ ଶ୍ରୀକୃଷ୍ଣଙ୍କ ଯାଦବ ବଂଶର ଏକ ଶାଖା । ଐତରେୟ ବ୍ରାହ୍ମଣରେ ସାତ୍ୱତମାନେ ଦକ୍ଷିଣାପଥବାସୀ ବୋଲି ବର୍ଣ୍ଣିତ ହୋଇଛନ୍ତି || ।

*§Asoka—Rock Edicts II and XIII.

§ Darius Hystaspes—Skylax—510 B. C.

‡ ଭାଗବତ ପୁରାଣ, ଦଶମ ଅଧ୍ୟାୟ, ୨୫ ଓ ୪୫ ।

|| ଐତରେୟ ବ୍ରାହ୍ମଣ, ଅଷ୍ଟମ, ୩ ଓ ୨୪ ।

ମନୁ ସେମାନଙ୍କୁ ବର୍ଣ୍ଣନା କରୁଛନ୍ତି ବୈଶ୍ୟବ୍ରାତ ରୂପେ * । ଶ୍ରୀକୃଷ୍ଣଙ୍କ ସମଗ୍ର ଇତିହାସ ପର୍ଯ୍ୟାଲୋଚନା କଲେ ଏବଂ ସେ ଆଉ ଦୁର୍ଯ୍ୟୋଧନଙ୍କ ଉପକ୍ଷରେ 'ପାଣ୍ଡୁ' ବଂଶୀୟ ବିଦେଶାଗତ ପାଣ୍ଡବ-ମାନଙ୍କୁ ସାହାଯ୍ୟ କରିଥିବା କଥା ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ, କୃଷ୍ଣଙ୍କାସୁ ଶ୍ରୀକୃଷ୍ଣ ବ୍ରାତ୍ୟ (ବା ପତିତ କ୍ଷତ୍ରିୟ) ଥିବାର ସିଦ୍ଧାନ୍ତ କରିବାକୁ ହୁଏ । ଏହି ସକାଶେ ମନୁ ସାତ୍ୱତମାନଙ୍କୁ ବୈଶ୍ୟବ୍ରାତ କହୁଛନ୍ତି ଏବଂ ଐତରେୟ ବ୍ରାହ୍ମଣ ସେମାନଙ୍କୁ ଦକ୍ଷିଣାପଥବାସୀ ବୋଲି କହୁଛନ୍ତି ।

ଅଶୋକଙ୍କ ପରେ ଖ୍ରୀଷ୍ଟପୂର୍ବ ୨୩୦ରେ ସିମୁକ ଶାତବାହନ ଆନ୍ଧ୍ର ରାଜ୍ୟର ସ୍ୱାଧୀନତା ଘୋଷଣା କରିଥିଲେ । ତାଙ୍କ ପୁତ୍ର ପ୍ରଥମ ଶାତକର୍ଣ୍ଣିଙ୍କ ସ୍ତ୍ରୀ ନାୟନିକା ଥିଲେ ଅସ୍ମକ ରାଜଦୁହିତା § । ଏହି ବିବାହ ଫଳରେ ଶାତକର୍ଣ୍ଣି ପୈଠାନକୁ ରାଜଧାନୀ କଲେ ଏବଂ ଆନ୍ଧ୍ର ଓ ଅସ୍ମକ ମିଶିଯିବାରୁ ତାଙ୍କ କ୍ଷମତା ବଢ଼ିଗଲା । ଏହାପରେ ସେ ଜୟ କଲେ ମୂଳକ, ସୁରାଷ୍ଟ୍ର, କୁକ୍କୁର, ଅପରାନ୍ତ, ଅନୂପ, ବିଦର୍ଭ, ଆକର ଓ ଅବନ୍ତୀ । ଏହି ଅସାମାନ୍ୟ କ୍ଷମତାର ପ୍ରତାପ ସେ ଏକ ଅଶ୍ୱମେଧଦ୍ୱାରା ଘୋଷଣା କଲେ ‡ ।

* ମନୁସଂହିତା, ଦଶମ, ୨୩ ।

§ ନାନାଘାଟ ଲିପି ।

‡ ନାସିକ ଲିପି ।

ଅପରାନ୍ତ—ବୋମ୍ବେ ଉପକୂଳସ୍ଥ ଏକ କ୍ଷୁଦ୍ର ରାଜ୍ୟ ।

ଅନୂପ—ପଶ୍ଚିମ ମଧ୍ୟଭାରତର ଏକ କ୍ଷୁଦ୍ର ରାଜ୍ୟ ।

ସୁରାଷ୍ଟ୍ର ଓ କୁକ୍କୁର—ପରସ୍ପର ନିକଟବର୍ତ୍ତୀ ଦୁଇ କ୍ଷୁଦ୍ର ରାଜ୍ୟ ।

କଳିଙ୍ଗ ଓ ଆନ୍ଧ୍ର ଦୁଇ ରାଜ୍ୟ ମଧ୍ୟରେ ସୀମା ଥିଲା ଗୋଦାବରୀ । ଶାତକର୍ଣ୍ଣିଙ୍କ ରାଜସୂୟ ଓ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ ଫଳରେ ଖାରବେଳ ନିଜ ରାଜତ୍ୱର ଦ୍ୱିତୀୟ ବର୍ଷରେ ଆନ୍ଧ୍ର-ରାଜ୍ୟ ଆକ୍ରମଣ କଲେ । ଅସ୍ମକ ଓ ଆନ୍ଧ୍ରର ମିଳିତ ସେନା ଭୀଷଣ ସମର କଲେ, କିନ୍ତୁ ଖାରବେଳ ସ୍ୱୀୟ ରାଜଧାନୀରୁ ଆହୁରି ସୈନ୍ୟ ଅଣାଇଲେ ଏବଂ ବିଜୟୀ ହୋଇ ଶେଷରେ ପ୍ରତିଷ୍ଠାନ ଅଧିକାର କଲେ । ଆନ୍ଧ୍ର ଓ ଅସ୍ମକ ଉଭୟ ରାଜ୍ୟ ଖାରବେଳଙ୍କ ଅଧିରାଜତ୍ୱ ସ୍ୱୀକାର କଲା ।

ରାଜତ୍ୱର ଚତୁର୍ଥ ବର୍ଷରେ ଖାରବେଳ ରାଷ୍ଟ୍ରିକ ଓ ଭୋଜକମାନଙ୍କୁ ପରାସ୍ତ କଲେ । ଏମାନେ ସେ ହେଲେ ଦାକ୍ଷିଣାତ୍ୟର ସର୍ବଶ୍ରେଷ୍ଠ ଶକ୍ତି । ତାପରେ ସେ ଉତ୍ତରଭାରତ ବିଜୟ ହାତକୁ ନେଲେ । ମଗଧ ଉତ୍ତର ଭାରତର ସର୍ବଶ୍ରେଷ୍ଠ ଶକ୍ତି ଥିଲା । ବୃହସ୍ପତି ମିତ୍ର ମଗଧର ମୌର୍ଯ୍ୟ ରାଜା ଥିଲେ * ।

* ହାତୀଗୁମ୍ଫା ଲେଖରେ ମଗଧରାଜାଙ୍କ ନାମ ଲେଖା ହୋଇଛି "ବହସତିମିତ" ନାମରେ । ଜୟସ୍ୱାଲ କହନ୍ତି ଯେ ଏହି ବହସତି ମିତ୍ର ଥିଲେ ଶୁଙ୍ଗବଂଶର ପୁଷ୍ୟମିତ୍ର । ପୋଭସ ନାମକ ସ୍ଥାନରୁ ମିଳିଥିବା ଅହିଚ୍ଛତ୍ର ରାଜା ଆଷାଢ଼ସେନଙ୍କର ଦୁଇଟି ଲେଖରୁ ଜଣାଯାଏ ଯେ ବୃହସ୍ପତି ମିତ୍ର ନାମରେ ମୌର୍ଯ୍ୟବଂଶରେ ଜଣେ ରାଜା ଥିଲେ । ତାହାଙ୍କର ମାତୁଳ ଥିଲେ ଆଷାଢ଼ସେନ । ଅହିଚ୍ଛତ୍ର ବା ଅହିଚ୍ଛତ୍ର ଥିଲା ଗଙ୍ଗାଯମୁନା ମଧ୍ୟବର୍ତ୍ତୀ ଆଧୁନିକ ରୋହିଲଖଣ୍ଡ ଅଞ୍ଚଳ । ଅହିଚ୍ଛତ୍ରର ରାଜଧାନୀ ମଥୁରା ଥିଲା ।

କଳିଙ୍ଗରୁ ଜଳପଥରେ ତାହାର ବିଶାଳ ସେନା ସହ ଦାମୋଦର ନଦୀ ବାଟେ ଖାରବେଳ ଯାଇ ମଗଧରେ ଓହ୍ଲାଇ ଥିବେ । ତେଣୁ ହାତୀଗୁମ୍ଫା ଶିଳାଲେଖରେ ପଥର ବର୍ଣ୍ଣନା କମ୍ପା ପରବର୍ତ୍ତୀ ରାଜାମାନଙ୍କ ହଣ୍ଡ ଯୁଦ୍ଧର ବର୍ଣ୍ଣନା ନାହିଁ । ମଗଧର ରାଜା ବୃହସ୍ପତି ମିତ୍ର ପଳାୟନ କଲେ ମାତୁଳରାଜ୍ୟ ଅହିଛତ୍ରର ରାଜଧାନୀ ମଥୁରାକୁ । ଖାରବେଳ ତାଙ୍କ ଅନୁଧାବନ କରି ମଥୁରା ଆକ୍ରମଣ କଲେ । ମଥୁରା ଜୟ କରି ସେ ଫେରିବା ପଥରେ ମଗଧ ଆକ୍ରମଣ କଲେ । ଗୋରଥଗିରି (ଆଧୁନିକ ବରବର ପର୍ବତ) ର ପ୍ରସିଦ୍ଧ ଦୁର୍ଗ ଅଧିକାର କରିସାରି ଖାରବେଳ ମଗଧର ପ୍ରାଚୀନ ରାଜଧାନୀ ରାଜଗୃହ ଅବରୋଧ କଲେ । ରାଜଗୃହ ଅଧିକାର ପୂର୍ବରୁ ସେ ସେଠାରୁ ନେଇ ଆସିଲେ "ପଲ୍ଲବଭାର କଳ୍ପବୃକ୍ଷ" । କଳିଙ୍ଗକୁ ପ୍ରତ୍ୟାବର୍ତ୍ତନ କରି ବନ୍ଧପୁର ସ୍ମୃତିରକ୍ଷା ରୂପେ ଅଠତିରିଶ ଲକ୍ଷ ମୁଦ୍ରା ବ୍ୟୟରେ ଖାରବେଳ ରାଜଧାନୀରେ ଏକ "ମହାବିଜୟ ପ୍ରାସାଦ" ତୋଳାଇଲେ ।

ରାଜତ୍ୱର ଦ୍ୱାଦଶ ବର୍ଷରେ ଖାରବେଳ ଦ୍ୱିତୀୟଥର ମଗଧ ଆକ୍ରମଣ କଲେ । ଏଥର ସେ ଗଙ୍ଗା ନଦୀ କୂଳରେ ସୈନ୍ୟ ଶିବିର ସନ୍ନିବେଶ କଲେ । ବୃହସ୍ପତି ମିତ୍ର ଭୁମୂଳ ସଂଗ୍ରାମ କରି ପରାଜିତ ହେଲେ । ସେ ଖାରବେଳଙ୍କ ଅଧୀନତା ସ୍ୱୀକାର କଲେ । ଯେଉଁ ମଗଧ ଥରେ କଳିଙ୍ଗ ଜୟ କରିଥିଲା, ସେ ଏବେ ହେଲା କଳିଙ୍ଗର ସାମନ୍ତ ରାଜ୍ୟ । ମଗଧ ବିଜୟ ପରେ ଖାରବେଳ ଭାରତର ଏକଚ୍ଛତ୍ର ସମ୍ରାଟ୍ ହେଲେ । ଭାରତ ଗଗନରେ ଜୟଶ୍ରୀମଣ୍ଡିତ କଳିଙ୍ଗର ଗୌରବ ରବି ଉଦିତ ହେଲା ।

ଖାରବେଳଙ୍କ ଚେତ ବଂଶୀୟ ଅନ୍ୟାନ୍ୟ ନରପତିଙ୍କ ମଧ୍ୟରୁ କେବଳ କୁଡେପଶ୍ରୀଙ୍କ (କଦମ୍ବଶ୍ରୀ)ଙ୍କ ବ୍ୟତୀତ ଅନ୍ୟ କାହାର ବିବରଣ ଏ ପର୍ଯ୍ୟନ୍ତ ମିଳିନାହିଁ ।



( ୭ )

# ଦୁର୍ଦ୍ଦିନେ ଓଡ଼ିଶା

ଚେତିବଂଶର ଅବସାନରେ କଳିଙ୍ଗର ଯେ ପ୍ରକାର ଦୁର୍ଦ୍ଦଶା ଘଟିଲା, ମୌର୍ଯ୍ୟମାନଙ୍କର କଳିଙ୍ଗବିଜୟରେ ସେପରି କିଛି ବିଶେଷ କ୍ଷତି ଘଟି ନ ଥିଲା । କଳିଙ୍ଗ ଯୁଦ୍ଧ ପରେ ଚେତିରାଜା ମଗଧର ଅଧୀନତା ସ୍ୱୀକାର କରି ନ ଥିଲେ । ସେ କୋଶଳକୁ ଫେରିଆସି ପୁଣି କଳିଙ୍ଗର ସ୍ୱାଧୀନତା ଘୋଷଣା କରିଥିଲେ । ତିରିଶ ପଇଁତିରିଶ ବର୍ଷ ମଧ୍ୟରେ ଯେଉଁ କଳିଙ୍ଗକୁ ନେଇ କଳିଙ୍ଗ ଛଡ଼ା ହୋଇଥିଲା । କଳିଙ୍ଗ ଅଳ୍ପ ଦିନ ମଧ୍ୟରେ ଏକ ସାମ୍ରାଜ୍ୟ ସ୍ଥାପନ କରି ମଗଧକୁ ପରାଭବ ଦେଲା ଏବଂ ସମଗ୍ର ଉତ୍ତରଭାରତରେ ତଥା ଦାକ୍ଷିଣାତ୍ୟରେ ଏକ ସର୍ବଶ୍ରେଷ୍ଠ ଶକ୍ତି ହୋଇ ଠିଆ ହୋଇଥିଲା ।

ଖାରବେଳ ଆନ୍ଧ୍ର ବା ଅନ୍ୟ କୌଣସି ବିଜିତ ରାଜ୍ୟର ରାଜାମାନଙ୍କୁ ସିଂହାସନରୁ ତଡ଼ିଦେଇ ନ ଥିଲେ । ଆନ୍ଧ୍ର ଶାତବାହନ ବଂଶର ଗୌତମୀ ପୁତ୍ର ଶ୍ରୀ ଶାତକର୍ଣ୍ଣୀ ଜଣେ ପରାକ୍ରାନ୍ତ ରାଜା ଥିଲେ । ସେ ମାଳବରୁ କାନାଡ଼ଦେଶ ବା କାବେରୀ ପର୍ଯ୍ୟନ୍ତ ସମଗ୍ର ଭୂଭାଗ ଜୟ କରିଥିଲେ । ଖାରବେଳଙ୍କ ଅଳ୍ପଦିନ ପରେ ତାଙ୍କଦ୍ୱାରା କଳିଙ୍ଗର ଚେତିବଂଶ ଲୋପ ପାଇଥିଲା । ଆନ୍ଧ୍ରମାନେ କଳିଙ୍ଗ ଅଧିକାର କରିନେଲେ । ଗୋଦାବରୀଠାରୁ ପଦ୍ମା ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳ, ମଗକଳିଙ୍ଗ (ଆରକାନ, ମଳୟ, ଓ ବ୍ରହ୍ମଦେଶ) ଆନ୍ଧ୍ରମାନଙ୍କ

ପ୍ରତ୍ୟକ୍ଷ ଶାସିତ ଅଞ୍ଚଳରେ ପରିଣତ ହୋଇଥିଲା । ସେଥିରୁ ଜଣାପଡ଼େ ଖାରବେଳଙ୍କ ପରେ ମଧ୍ୟ ଏ ସମଗ୍ର ଅଞ୍ଚଳ କଳିଙ୍ଗର ଶାସିତ ଅଞ୍ଚଳ ଥିଲା * । ଖ୍ରୀଷ୍ଟପୂର୍ବ ୧୮୦ରୁ ଖ୍ରୀଷ୍ଟପର ୨୪୯ ଅବ୍ଦ ପର୍ଯ୍ୟନ୍ତ ଆନ୍ଧ୍ରମାନଙ୍କର ଗୌରବକାଳ ଥିଲା । ସେମାନଙ୍କ ପତନ ପରେ ରାଜ୍ୟ ପାଦଦେଶରେ ଆଧୁନିକ ବେହାର ଓ ତତ୍ସଂଲଗ୍ନ ଅଞ୍ଚଳରେ ପ୍ରବଳ ବାକାଟକ ରାଜ୍ୟ ସ୍ଥାପିତ ହୋଇଥିଲା ।

କଳିଙ୍ଗର ଏକ ଏକ କ୍ଷୁଦ୍ର ଅଞ୍ଚଳରେ ଆନ୍ଧ୍ରମାନେ ଜଣେ ଜଣେ ଶାସନକର୍ତ୍ତା ବା ସାମନ୍ତ ନିଯୁକ୍ତ କରିଥିଲେ । ଆନ୍ଧ୍ରଙ୍କର ଅବସାନ ସଙ୍ଗେ ସଙ୍ଗେ ଏହି ସାମନ୍ତମାନେ ନିଜ ନିଜ ସ୍ୱାଧୀନତା ଘୋଷଣା କରିଥିଲେ । ବିଶାଳ କଳିଙ୍ଗ ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ପରିଣତ ହୋଇଥିଲା ।

* The Andhra Kings……had some control over the coasts of Orissa, Bengal and Arracan; on this account they styled themselves in inscriptions "lords of the three Kalingas." × × × "Other Andhra coins bear the design of a sailing ship, thus testifying to the prevalence of commerce at the time."

—History of India—M. Prothero.
PP. 131-132
(Macmillan & Co., London)

୦୫

ଖଣ୍ଡବିଖଣ୍ଡ କଳିଙ୍ଗର ସେହି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ଇତିହାସ ରହିଛି ବିସ୍ମୃତି ଗର୍ଭରେ । କେବଳ ସମୁଦ୍ରଗୁପ୍ତ ଓ ହର୍ଷବର୍ଦ୍ଧନଙ୍କ ସମ୍ପର୍କରେ ମାତ୍ର କେତେକ କଥା ଜଣାପଡ଼େ ।

ସମୁଦ୍ରଗୁପ୍ତଙ୍କ ପ୍ରୟାଗ ଜୟସ୍ତମ୍ଭର ସେନାପତି ହରିସେନଙ୍କ ଶିଳାଲେଖରୁ ଜଣାଯାଏ ଯେ କୋଶଳ ଦୁଇ ଖଣ୍ଡରେ ବିଭକ୍ତ ଥିଲା: କୋଶଳ (ସମ୍ବଲପୁର-ଛତିଶଗଡ଼) ଓ ମହାକାନ୍ତାର (କଳାହାଣ୍ଡି-ବସ୍ତର) । କୋଶଳର ରାଜା ଥିଲେ ମହେନ୍ଦ୍ର ଏବଂ ମହାକାନ୍ତାରରେ ରାଜା ଥିଲେ ବ୍ୟାଘ୍ରରାଜ । କଳିଙ୍ଗର ଅନ୍ୟାନ୍ୟ ରାଜ୍ୟ ମଧ୍ୟରେ ନିମ୍ନଲିଖିତ ରାଜ୍ୟ ଓ ରାଜାଙ୍କର ନାମ ଏହି ଜୟସ୍ତମ୍ଭରୁ ମିଳେ !

କୁରଳ ରାଜ୍ୟର ରାଜା ମଣ୍ଟରାଜ, ପୂର୍ବ ଗୋଦାବରୀ ଜିଲ୍ଲାର ପିଷ୍ଟପୁର (ପିଠାପୁର) ର ରାଜା ମହେନ୍ଦ୍ର, ଗିରିକୋଟ୍ଟର (ଗଞ୍ଜାମ ଜିଲ୍ଲାର କୋଠୁର) ର ରାଜା ସ୍ୱାମୀଦତ୍ତ, ଚିକାକୋଲ ରେଲଷ୍ଟେସନ ନିକଟରେ ଥିବା ଏରଣ୍ଡପଲ୍ଲୀର ରାଜା ଦାମନ, ଏବଂ ବିଶାଖାପାଟଣା ଜିଲ୍ଲାର ଦେବରାଷ୍ଟ୍ରର ରାଜା କୁବେର । ହର୍ଷବର୍ଦ୍ଧନଙ୍କ ସମ୍ପର୍କରେ ଜଣାଯାଏ ଯେ ଗୌଡ଼ ବା କର୍ଣ୍ଣସୁବର୍ଣ୍ଣ (ଦକ୍ଷିଣ ବଙ୍ଗଳା) ର ରାଜା ଥିଲେ ଶଶାଙ୍କ ।

ପୂର୍ବ ଗୋଦାବରୀ ଜିଲ୍ଲାର ପିଠାପୁରରେ ମାଠରବଂଶ ରାଜତ୍ୱ କରୁଥିଲେ । ପଛକୁ ସେମାନେ ପିଠାପୁରରୁ ରାଜଧାନୀ ଉଠାଇ ନେଇଥିଲେ ବିଶାଖାପାଟଣା ଜିଲ୍ଲାର ସିଂହପୁରକୁ । ଶକ୍ତିବର୍ମା ମାଠରବଂଶର ସ୍ଥାପନକର୍ତ୍ତା ଥିଲେ ଏବଂ ବିଶାଖବର୍ମା ସେହି ବଂଶର ଶେଷ ରାଜା ଥିଲେ । ଏହି ବଂଶର ମହେନ୍ଦ୍ରବର୍ମା ସମୁଦ୍ରଗୁପ୍ତଙ୍କ



ଆନ୍ଧ୍ରରାଜତ୍ୱ ପରେ ଓଡ଼ିଶା
ଗଙ୍ଗା
ମଗଧ
ଗୌଡ଼
କୋଶଳ
କଙ୍ଗୋଦ
କଳିଙ୍ଗ
ଗୋଦାବରୀ
ଦେବରାଷ୍ଟ୍ର
ପିଷ୍ଟପୁର
କୃଷ୍ଣା

ସଙ୍ଗେ ଲଢ଼ିଥିଲେ । ଏହି ବଂଶର ଅନ୍ୟ ଏକ ରାଜା ଚନ୍ଦ୍ରବର୍ମା "କଳିଙ୍ଗାଧିପତି" ବୋଲାଉଥିଲେ ।

ବିଶାଖାପାଟଣା ଜିଲ୍ଲାର ଷ୍ଟେଗପୁରଠାରେ ଦେବରାଷ୍ଟ୍ରର ରାଜଧାନୀ ଥିଲା । ତହିଁର ରାଜା କୁବେର ସମୁଦ୍ରଗୁପ୍ତଙ୍କ ସଙ୍ଗେ ଲଢ଼ିଥିଲେ । ତାଙ୍କ ବଂଶର ନାମ ବାଶିଷ୍ଠ । ଗୁଣବର୍ମା, ପ୍ରଭଞ୍ଜନ ବର୍ମା ଓ ଅନନ୍ତବର୍ମା ଏହି ବଂଶର ରାଜା । ମାଠରମାନେ ଏହି ବାଶିଷ୍ଠ ବଂଶର ଶାଖା । ମାଠର ବଂଶର ପ୍ରଥମ ରାଜା ନିଜକୁ 'ବାଶିଷ୍ଠପୁତ୍ର' ବୋଲି କହୁଛନ୍ତି ।

ଚିକାକୋଲ (ଶ୍ରୀକାକୁଳ) ଅନ୍ତଃପାତୀ ଏରଣ୍ଡପଲ୍ଲୀ ରାଜ୍ୟର ରାଜା 'ଦାମନ' ଏବଂ ଗଞ୍ଜାମ ଜିଲ୍ଲାର କୋଠୁର (ଗିରିକୋଟ୍ଟୁର)ର ରାଜା ସ୍ୱାମୀଦତ୍ତ ସମୁଦ୍ରଗୁପ୍ତଙ୍କ ସଙ୍ଗେ ଲଢ଼ିଥିଲେ ।

ଋଷିକୁଲ୍ୟା ଓ ମହାନଦୀ ମଧ୍ୟରେ ଥିଲା କଙ୍ଗୋଦ (କନ୍ୟୋଧ) ରାଜ୍ୟ । ଏହାର ରାଜଧାନୀ ଶାଳିମା ନଦୀ କୂଳରେ ଥିଲା । ସେଠାରେ ରାଜତ୍ୱ କରୁଥିଲେ ଶୈଳୋଦ୍ଭବ ବଂଶ । ଶୈଳୋଦ୍ଭବ ବଂଶର ଅନେକଗୁଡ଼ିଏ ତାମ୍ରଶାସନ ମିଳିଛି ଯହିଁରୁ, ଜଣାଯାଏ ଯେ ସେହି ବଂଶରେ ଚଉଦ ଜଣ ରାଜା ଥିଲେ :—

୧ । ପୁଳିନ୍ଦସେନ

|

୨ । ଶୈଳୋଦ୍ଭବ

|

୩ । ରଣଭୀତ

|


୪ । ସୈନ୍ୟଭୀତ (I)
୫ । ଯଶୋଭୀତ
୬ । ମାଧବବର୍ମା ସୈନ୍ୟଭୀତ (II)
୭ । ମଧ୍ୟମରାଜ ଯଶୋଭୀତ ଶଶାଙ୍କ (I)
୮ । ମହାରାଜା ମହାସାମନ୍ତ ମାଧବରାଜ (II)
(୬୧୯-୬୦ ଖ୍ରୀ: ଅ:)
୯ । ମହାରାଜାଧିରାଜ
ଧର୍ମରାଜ ମାନଭୀତ
୧୦ । ମଧ୍ୟମରାଜ (II)
ଅନାମିକ
୧୧ । ଯଶୋଭୀତ
୧୨ । ରଣକ୍ଷୋଭ
ଅଲ୍ଲପରାଜ
ଛୈଳପାଣି
୧୩ । ମହାରାଜା
ମହାସାମନ୍ତ ମାଧବରାଜ
ସୈନ୍ୟଭୀତ (III)
୧୪ । ମହାରାଜା ମହାସାମନ୍ତ ମଧ୍ୟମରାଜ (III)

ଶୈଳୋଦ୍ଭବ ବଂଶର ମଧ୍ୟମରାଜ ଯଶୋଭୀତ ରାଜାଙ୍କ ଅଶ୍ୱମେଧ ଓ ବାଜପେୟ ଯଜ୍ଞର ଅନୁଷ୍ଠାନ କରି ଚତୁର୍ଦ୍ଦିଗରେ ନିଜ ପରାକ୍ରମ ଖ୍ୟାପିତ କରିଥିଲେ । ସେ ଦକ୍ଷିଣକୋଶଳ (ସମ୍ବଲପୁର-ଛତିଶଗଡ଼) ର ରାଜା ନନ୍ନଦେବଙ୍କୁ ଏବଂ ଦନ୍ତପୁରର ପୂର୍ବ ଗଙ୍ଗବଂଶୀୟ ରାଜାଙ୍କୁ ପରାସ୍ତ କରିଥିଲେ । ତାଙ୍କ କନିଷ୍ଠ ପୁତ୍ର ମାଧବରାଜ ନିଜ ଅଗ୍ରଜ ଧର୍ମରାଜଙ୍କ ବିରୋଧରେ ବିଦ୍ରୋହ କରିଥିଲେ ଏବଂ ସେଥିରେ ତାଙ୍କୁ କୋଶଳର ରାଜା ତିବରଦେବ ସାହାଯ୍ୟ କରିଥିଲେ । ଧର୍ମରାଜ ତିବରଦେବଙ୍କୁ ଆଧୁନିକ ବଲାଙ୍ଗିର-ପାଟଣା ଜିଲ୍ଲାର ଫାସିକା ବା ଫାସିଳଠାରେ ପରାସ୍ତ କଲେ । ମାଧବରାଜ ପରାସ୍ତ ହୋଇ ବିନ୍ଧ୍ୟାଟବୀକୁ ପଳାୟନ କଲେ ଏବଂ ସେଠାରେ ତାଙ୍କର ମୃତ୍ୟୁ ଘଟିଲ ।

•

ଧର୍ମରାଜ ମାନଭୀତଙ୍କ ପରେ ଶୈଳୋଦ୍ଭବ ବଂଶର ପରାକ୍ରମ କମି ଯାଇଥିଲ । ଉଣତିଷାଭ ୭୦୫ ରୁ ୭୧୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ କଙ୍ଗୋଦର ରାଜା ଥିଲେ । କୋଶଳର ସୋମଗୁପ୍ତ ବଂଶ ଓ କଙ୍ଗୋଦର ଶୈଳୋଦ୍ଭବ ବଂଶ ମଧ୍ୟରେ ତଥା କଳିଙ୍ଗର ପୂର୍ବ ଗଙ୍ଗ ବଂଶ (ରାଜଧାନୀ ଦନ୍ତପୁର ବା ଦନ୍ତଗୁଳ ଅଥବା କଳିଙ୍ଗପାଟଣା ବା ମୁଖଲିଙ୍ଗ) ଓ ଆନ୍ଧ୍ର ରାଜ୍ୟର ବିଷ୍ଣୁକୁଣ୍ଡୀ ବଂଶ ମଧ୍ୟରେ ଅନ୍ତରଙ୍ଗ ସମ୍ପର୍କ ରହିଥିଲ ।

କୋଶଳର ହର୍ଷଗୁପ୍ତଙ୍କ ଭଗ୍ନୀ ବିବାହ କରିଥିଲେ ଆନ୍ଧ୍ର ରାଜା ମାଧବବର୍ମାଙ୍କୁ । ହର୍ଷଗୁପ୍ତ ଓ ମାଧବବର୍ମା ମିଳି କଳିଙ୍ଗ ଜୟ କଲେ । ତତ୍ପୂର୍ବରୁ କୋଶଳ ମହାକାନ୍ତାର ଜୟ କରି ସାରିଥିଲ ।

ଆନ୍ଧ୍ର, କୋଶଳ, କଳିଙ୍ଗ ଓ କଙ୍ଗୋଦ ନିଜ ନିଜ ମଧ୍ୟରେ କଳି କରି ସମସ୍ତେ ଦୁର୍ବଳ ହୋଇ ପଡ଼ିଥିଲେ । ଦାକ୍ଷିଣାତ୍ୟର ଚାଳୁକ୍ୟ ରାଜା ଦ୍ୱିତୀୟ ପୁଲକେଶୀ କଳିଙ୍ଗ ଓ କୋଶଳ ଆକ୍ରମଣ କରି ସେମାନଙ୍କର ପରାକ୍ରମ ହ୍ରାସ କରିଥିଲେ ।

ଗୃହ୍ନାଣାଂ ସ୍ୱଗୁଣୈସ୍ତ୍ରିବର୍ଗତୁଙ୍ଗାଃ
ବହୁତାନେକକ୍ଷିତିପାଳମାନଭଙ୍ଗାଃ ।
ଅଭବନ୍ନୁପଜାତଭୀତିଲିଙ୍ଗାଃ
ଯଦନୀକେନ ସକୋଶଳକଳିଙ୍ଗାଃ । *

ପୁଲକେଶୀ କୋଶଳ ଓ କଳିଙ୍ଗକୁ ଯୁଦ୍ଧରେ ପରାସ୍ତ କରିଥିଲେ ମଧ୍ୟ ତାକୁ ଚାଳୁକ୍ୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିବାର ଜଣାଯାଏ ନାହିଁ, କାରଣ ଠିକ ଏହି ସମୟରେ ହ୍ୱାଂ ଚୁଂ କୋଶଳ, କଳିଙ୍ଗ ଓ କଙ୍ଗୋଦକୁ ବର୍ଣ୍ଣନା କରିଛନ୍ତି ତିନି ସ୍ୱାଧୀନ ରାଜ୍ୟ ରୂପେ ।

ଶୈଳୋଦ୍ଭବ ବଂଶର ଅଷ୍ଟମ ରାଜା ମାଧବରାଜ ଏକ ତାମ୍ରଶାସନରେ ନିଜକୁ ବର୍ଣ୍ଣନା କରିଛନ୍ତି "ଶଶାଙ୍କଙ୍କ ସାମନ୍ତ ରାଜା" ବୋଲି । ସମ୍ଭବତଃ ସେ ପିତାଙ୍କ ରାଜତ୍ୱକାଳରେ ଗୋଟିଏ ଅଞ୍ଚଳ ତାଙ୍କ ସାମନ୍ତ ରୂପେ ଶାସନ କରୁଥିଲେ § । ଐତିହାସିକ ରାଖାଲ

* Epigraphia Indica, Vol. VI, PP. 6·11.

§ Banpur Copperplate of ମାଧବରାଜ (Kalinga Historical Society's Journal, Vol. II (1), PP. 59—65).

ଦାସ ବାନୁର୍ଜୀ ଭ୍ରମ ବଶତଃ ତାଙ୍କୁ ଗୌଡ଼ର ଶଶାଙ୍କଙ୍କ ସାମନ୍ତ ରାଜା ବୋଲି କହୁଛନ୍ତି * ।

ଶୈଳୋଦ୍ଭବ ମାଧବରାଜ ବାଣପୁର ତାମ୍ରଶାସନରେ ନିଜ ଶଶାଙ୍କଙ୍କୁ କହୁଛନ୍ତି, 'ମଗଧ, କଳିଙ୍ଗ, ରାଢ଼, ଓଡ୍ର ଓ କଙ୍ଗୋଦର ଅଧିପତି' ବୋଲି । ସେଥିରେ ଗୌଡ଼ ବା କର୍ଣ୍ଣସୁବର୍ଣ୍ଣର ଉଲ୍ଲେଖ ନାହିଁ । ଏଥି ଶଶାଙ୍କ ଯଦି ହୋଇଥାନ୍ତେ ଗୌଡ଼ର ନରେନ୍ଦ୍ରଗୁପ୍ତ,

* "In this period it is not possible to think of any other Sasanka than of the much abused Sasanka, king of Gauda."
( History of Orissa, Vol.I, P. 125—R. D. Banerji ).

ବାନୁର୍ଜୀଙ୍କ ଏହି ଉକ୍ତିରୁ ଗୌଡ଼ର ଶଶାଙ୍କଙ୍କ ବ୍ୟତୀତ ଅନ୍ୟ ଜଣେ ଶଶାଙ୍କ ଥିଲେ ବୋଲି ଭାବିବାକୁ ସ୍ୱତଃ ପ୍ରଲୋଭନ ହୁଏ ।

"The question may be raised if in the first place it could be possible for Narendra Gupta (Sasanka) to come upon Puri without traversing the districts of Balasore and Cattack, and if in the second place Narendra Gupta having his capital seat in Bengal could keep the Kongoda country under his rule

(ପର ପୃଷ୍ଠା ଦେଖ)

ତେବେ ତାମ୍ରଶାସନରେ ଗୌଡ଼ର ମଧ୍ୟ ଉଲ୍ଲେଖ ଥାନ୍ତା । ଅପରନ୍ତୁ ସ୍ଥାନାନ୍ତରେ ନରେନ୍ଦ୍ରଗୁପ୍ତ ବର୍ଣ୍ଣିତ ହୋଇଛନ୍ତି ଜଣେ ମହାସାମନ୍ତ ରୂପେ * । ଯଦି ନରେନ୍ଦ୍ରଗୁପ୍ତ କୋଶଳର ହର୍ଷଗୁପ୍ତଙ୍କ ନିଯୁକ୍ତ ଗୌଡ଼ର ମହାସାମନ୍ତ ଥିଲେ, ତେବେ ସେ କୋଶଳ ତରଫରୁ ବଙ୍ଗ, ଓଡ୍ର ଓ କଙ୍ଗୋଦ ଶାସନ କରୁଥିଲେ । ସୁତରାଂ କଙ୍ଗୋଦର ରାଜା ତାଙ୍କ ଶାସିତ ସାମନ୍ତ ଥିଲେ ।

କୋଶଳର ସୋମଗୁପ୍ତ ବଂଶର ଏକ ଶାଖା ଗୌଡ଼ରେ ସ୍ଥାପନ କରିଥିଲେ ଏକ ସାମନ୍ତ ଉପନିବେଶ ¶ । ସେହି ଶାଖା ସାମନ୍ତବଂଶରେ ନରେନ୍ଦ୍ରଗୁପ୍ତ ଗୌଡ଼ର ସାମନ୍ତ ବା ରାଜା ଥିଲେ । ସମ୍ଭବତଃ ସୋମଗୁପ୍ତ ବଂଶର ହର୍ଷଗୁପ୍ତଙ୍କ ପୁତ୍ର ରଣକେଶରୀଙ୍କ ପ୍ରକୃତ ନାମ ଥିଲା 'ନରେନ୍ଦ୍ରଗୁପ୍ତ' ଏବଂ ଗୌଡ଼ ଓ ରାଢ଼ ଜୟ

(ପର ପୃଷ୍ଠା ପରେ)

when the Northern portion of Orissa was under the rule of another house of rulers." Orissa in the Making, PP. 99—100,—B. C. Mazumdar).

* Gupta Inscriptions, P. 284—Fleet.

¶ Maranjamura Copperplate Grant of Yajati Mahasiva Gupta—J.B.O.R.S. 1916—B. C. Mazumdar.

କରିବା ପରେ ହର୍ଷଗୁପ୍ତ ନରେନ୍ଦ୍ରଗୁପ୍ତ ଶଶାଙ୍କଙ୍କୁ ମହାସାମନ୍ତ ରୂପେ † ବଙ୍ଗଳାରେ ପ୍ରତିଷ୍ଠା କରିଥିଲେ ।

ସୋମଗୁପ୍ତ ବଂଶର ଏହି ଗୌଡ଼ୀୟ ରାଜକୁମାର ମହାସାମନ୍ତ ଗୌଡ଼ ଓ ରାଢ଼ ଶାସନ କରୁଥିଲେ । ଶ୍ରୀମତ୍ ଯଜାତି ସେ କଥା ଉଲ୍ଲେଖ କରିଛନ୍ତି ନିମ୍ନ ଶ୍ଳୋକରେ :—

ଅସ୍ୱଦଙ୍ଗାନୁପ୍ରେ କାଳେ ଯଃ କଶ୍ଚିନ୍ନୃପତିର୍ଭବେତ୍ ।
ତସ୍ୟାହଂ ପାଦରଜୋଽସ୍ମି ଯଜାତିଃ XXX ।

ବଙ୍ଗଳ ଶତ୍ରୁମାନଙ୍କ ଦ୍ୱାରା ଆକ୍ରାନ୍ତ ହେବା ବେଳେ ଯଜାତି ସେଠାକୁ ସସୈନ୍ୟ ଯାଇ କରି ସଗୋତ୍ରମାନଙ୍କୁ ଶତ୍ରୁ ହାତରୁ * ରକ୍ଷା କରୁଥିଲେ ।

† ମାଦ୍ୟଦ୍ଭସମୂହଦନ୍ତମୁଷଳଷ୍ଟ୍ରୀରଭୂକ୍ତିରେ
ଗୌଡ଼ୋଡ୍ରାଦିକଳିଙ୍ଗକୋଶଳପତିଶ୍ରୀହର୍ଷଦେବାତ୍ମଜା
ଦେବୀ ରାଜ୍ୟମତୀ କୁଳୋଚିତଗୁଣୈର୍ଯୁକ୍ତା ପ୍ରଭୂତାକୁଳୈଃ
ଯେନୋଢ଼ା ଭଗଦତ୍ତରାଜକୁଳଜା ଲକ୍ଷ୍ମୀରିବା କ୍ଷ୍ମାଭୁଜା ।
(Nepal Stone Incriptions of Jaydeva of Harsa Era 153—Indian Antiquary, P. 181.)

* କ. Maranjamura Charter of Yajati Mahasiva Gupta—Journal of the Bihar and Orissa Research Society, 1916—B. C. Mazumdar.
ଖ. "The Maranjamura Charter of Yajati Mahasiva Gupta (edited by me in the

(ପର ପୃଷ୍ଠା ଦେଖ)

ଶ୍ରୀମତ୍ ଯଜାତି ଓ ଜନମେଜୟଙ୍କ ଅନେକ ପୂର୍ବରୁ ଅର୍ଥାତ୍ ଶ୍ରୀ ଚନ୍ଦ୍ରଗୁପ୍ତ ଭବରଦେବ (୫୪୯-୫୫୨) ଏବଂ ଶ୍ରୀ ହର୍ଷଗୁପ୍ତ ଦେବ (୫୫୨-୬୨୧)ଙ୍କ ଅମଳମାନଙ୍କରେ କୋଶଳଗୁପ୍ତ ବଂଶର ମହାସାମନ୍ତ ଗୌଡ଼ରେ ପ୍ରତିଷ୍ଠିତ ହୋଇଥିଲେ ।

ଇତିମଧ୍ୟରେ କୋଶଳ ପୂର୍ବ ଗଙ୍ଗବଂଶଠାରୁ କଳିଙ୍ଗ ଅଧିକାର କରିଥିଲେ । ରାଜପୁରଠାରେ ଭୌମକର ନାମରେ ଏକ ବଂଶର ଅଭ୍ୟୁଦୟ ହୋଇଥିଲା । ଏମାନେ ଦକ୍ଷିଣ ଆଡ଼କୁ ଅଗ୍ରସର ହୋଇ କଳିଙ୍ଗାଦିର ଶୈଳୋଦ୍ଭବ ବଂଶର ଉଚ୍ଛେଦ ସାଧନ କଲେ ଏବଂ

J. B. O. R. S., 1916) discloses the startling fact that one branch of the family of these Kosala Guptas ruled somewhere in Bengal during these days. The manner in which this fact has been mentioned in the charter induces me to believe that the Bengal line of Kosala Guptas was established long before the time of Yajati and Janamejoy, × × ×".

(Typical Selections from Oriya Literature, Vol. I—Introduction, P. XVI—B. C. Mazumdar. —Published by the Calcutta University.)

ସେମାନଙ୍କ ହସ୍ତରୁ କଙ୍ଗୋଦ ଅଧିକାର କରିଥିଲେ । କୋଶଳର ସୋମଗୁପ୍ତ ବଂଶୀୟ ହର୍ଷଗୁପ୍ତଙ୍କ ବଂଶଧରମାନେ ଭୌମଙ୍କର ବଂଶଠାରୁ କଙ୍ଗୋଦ ଅଧିକାର କରିଥିଲେ ।

ହର୍ଷବର୍ଦ୍ଧନ ଉତ୍ତର ଭାରତ ଜୟ କରିବାରେ ଯେପରି ଶୌର୍ଯ୍ୟ, ପରାକ୍ରମ ଓ ସାଫଲ୍ୟ ଦେଖାଇଥିଲେ, କୋଶଳ, କଳିଙ୍ଗ, ଗୌଡ଼ ଓ ଦାକ୍ଷିଣାତ୍ୟ ଆକ୍ରମଣରେ ସେହି ଅନୁପାତରେ କ୍ଷମତା ଦେଖାଇଲେ । ସେ ଗୌଡ଼ଯୁଦ୍ଧରେ ବିଶେଷ କିଛି କରିପାରି ନ ଥିଲେ । କାମରୂପର ଭାସ୍କରବର୍ମା ଗୌଡ଼ରୁ ନରେନ୍ଦ୍ରଗୁପ୍ତ ଶଶାଙ୍କଙ୍କୁ ତଡ଼ିଦେଲେ । ନରେନ୍ଦ୍ରଗୁପ୍ତ ଗୌଡ଼ରୁ ପଳାଇ ଆସି କୋଶଳ ଓଡ଼ିଶାରେ ଆଶ୍ରୟ ନେଲେ । ଏହି ସମୟରେ ହର୍ଷବର୍ଦ୍ଧନ ଦାକ୍ଷିଣାତ୍ୟର ପୁଲକେଶୀଙ୍କ ଚାଲୁକ୍ୟ ରାଜ୍ୟ ଆକ୍ରମଣ ନିମନ୍ତେ ବାହାରିଲେ । ସେ ପୁଲକେଶୀଙ୍କ ଦ୍ୱାରା ପରାସ୍ତ ହୋଇ ନର୍ମଦାକୁ ନିଜ ସାମ୍ରାଜ୍ୟର ଦକ୍ଷିଣ ସୀମା ବୋଲି ମାନିନେଲେ । ସୁଯୋଗ ପାଇ କୋଶଳ ଓ ନରେନ୍ଦ୍ରଗୁପ୍ତ ବଳସଞ୍ଚୟ କରିନେଲେ । ଶ୍ରୀହର୍ଷବର୍ଦ୍ଧନ କୋଶଳ ଆକ୍ରମଣରୁ କ୍ଷାନ୍ତ ହୋଇଥିଲେ ।

କଙ୍ଗୋଦରାଜ୍ୟ ହରାଇବା ପରେ ଶୈଳୋଦ୍ଭବ ବଂଶର ଏକ ଶାଖା ମଧ୍ୟପ୍ରଦେଶରେ ଏକ ରାଜ୍ୟ ସ୍ଥାପନ କଲେ *, ଅନ୍ୟ ଏକ

* ରଘୋଲି ତାମ୍ରଶାସନ, ଦ୍ୱିତୀୟ ଜୟବର୍ଦ୍ଧନ—
Epigraphia Indica, Vol. VI, pp. 6-11.

ଶାଖା ମଳୟକୁ ପ୍ରସ୍ଥାନ କଲେ † । ମଳୟ ଶାଖାଟିପଠାରେ ସୁବର୍ଣ୍ଣଭୂମିର ବିଖ୍ୟାତ ଡ଼ରେସମୁଦ୍ର କଳିଙ୍ଗସାମ୍ରାଜ୍ୟ ସ୍ଥାପନ କଲେ ।

ଖ୍ରୀଷ୍ଟପୂର୍ବ ଶତକମାନଙ୍କରେ କାଳିଙ୍ଗମାନେ ସୁବର୍ଣ୍ଣଦ୍ୱୀପରେ ଉପନିବେଶ ସ୍ଥାପନ କରିଥିଲେ । ଟଲେମି କହନ୍ତି ଯେ କଳିଙ୍ଗ ଉପକୂଳରୁ ଶତସହସ୍ର ଜାହାଜ ଗମନାଗମନ କରୁଥିଲ ମଳୟା-ସିଆକୁ । ଖ୍ରୀଷ୍ଟ ଷଷ୍ଠ ଶତକର ପଶ୍ଚିମ ଯବର ରଜା ପୂର୍ଣ୍ଣବର୍ମା ଥିଲେ କଳିଙ୍ଗର ଶୈଳୋଦ୍ଭବ ବଂଶୀୟ । ତାଙ୍କ ପିତା ଯବରେ "ଚନ୍ଦ୍ରଭଗା" ଜଳପ୍ରଣାଳୀ ଖୋଳାଇଥିଲେ ।

କଳିଙ୍ଗର ଶୈଳୋଦ୍ଭବ ସାମ୍ରାଜ୍ୟର ମୂଳପତ୍ତନ ଖ୍ରୀଷ୍ଟ ଅଷ୍ଟମ ଶତକରେ ସ୍ଥାପିତ ହୁଏ । ପୂର୍ବୋକ୍ତ ପୂର୍ଣ୍ଣବର୍ମାଙ୍କ ବଂଶୀୟମାନେ କଳିଙ୍ଗସାମ୍ରାଜ୍ୟର କ୍ଷମତା ବିସ୍ତାରରେ ନବାଗତ ଶୈଳୋଦ୍ଭବ ବଂଶକୁ ସାହାଯ୍ୟ କରିଥିଲେ । ଫଳରେ ମଳୟ, ଯବ, ସୁମାତ୍ରା ବାଲି, ବୋର୍ଣ୍ଣିଓ, ଚମ୍ପା ଓ କମ୍ବୋଜରେ "ନବ ଶୈଳୋଦ୍ଭବ ସାମ୍ରାଜ୍ୟ" ପ୍ରସାର ଲାଭ କରିଥିଲ । ଏହି ସମଗ୍ର ଭୂଖଣ୍ଡ କଳିଙ୍ଗ ନାମରେ କଥିତ ହେଉଥିଲ । ଓଡ଼ିଶାର ତଦାନୀନ୍ତନ ନାଗରୀ ଲିପି, ସଂସ୍କୃତ, ଭାଷା, ଶିଳ୍ପସ୍ଥାପତ୍ୟ, ସଂସ୍କୃତି ଓ ସଭ୍ୟତା ତଥା ଧର୍ମ ସମସ୍ତ ସେହି

† "At some subsequent date the Sailas or Sailodbhavas migrated to the Malaya Peninsula, where their incriptions have been discovered".
(History of Orissa, P. 131—R. D. Banerji.)

ନୂତନ କଳିଙ୍ଗରେ ଅନୁସୃତ ହୋଇଥିଲା । ସେଠାରେ ସୁନ୍ଦର ବୌଦ୍ଧ ଦେବାଳୟ ଓ ଦେବମୂର୍ତ୍ତି ନିର୍ମିତ ହୋଇଥିଲା । ଶୈଳେନ୍ଦ୍ର ବଂଶର ଶ୍ରୀବଳ-ପୁତ୍ର ଦେବ ବିହାରର ନାଳନ୍ଦାରେ ତୋଳିଥିଲେ ଏକ ବୌଦ୍ଧବିହାର, ଯାହାର ପ୍ରମାଣ ଏବେ ନାଳନ୍ଦାର ଏକ ତାମ୍ରଶାସନରୁ ମିଳୁଛି ।

ଖ୍ରୀଷ୍ଟ ଏକାଦଶ ଶତକରେ ଚୋଳସମ୍ରାଟ୍ ରାଜେନ୍ଦ୍ର ଚୋଳ ସୁବର୍ଣ୍ଣଦ୍ୱୀପର ଶୈଳେନ୍ଦ୍ର ସାମ୍ରାଜ୍ୟ ଆକ୍ରମଣ ଓ ଜୟ କରନ୍ତି । କିନ୍ତୁ ଅଳ୍ପ କେତେକ ବର୍ଷ ପରେ ସେହି ଶତକର ଶେଷ ଆଡ଼କୁ ଶୈଳେନ୍ଦ୍ରମାନେ ପୁଣି ସ୍ୱାଧୀନତା ପୁନରୁଦ୍ଧାର କରିଥିଲେ ।

ହୁଏନସାଂ କହନ୍ତି ଯେ କଳିଙ୍ଗ ରାଜ୍ୟ ଗୋଦାବରୀକୃଷ୍ଣା ମଧ୍ୟରେ ଥିଲା । କଳିଙ୍ଗର ଘନ ଅରଣ୍ୟାନୀରେ କୃଷ୍ଣକାୟ ହସ୍ତୀ ମିଳୁଥିଲେ । କଳିଙ୍ଗର ପରିଧି ଏକ ହଜାର ମାଇଲ ଥିଲା । ଏହାର ରାଜଧାନୀ କଳିଙ୍ଗପାଟଣା ବା ଆଧୁନିକ ମୁଖଲିଙ୍ଗ ପାଖରେ ଥିଲା । ସେଠାରେ ଗଙ୍ଗବଂଶ ରାଜତ୍ୱ କରୁଥିଲେ । ଗଙ୍ଗବଂଶ ଶୈଳୋଦ୍ଭବ ବଂଶର ସଗୋତ୍ର ଥିଲେ । ଉଭୟ ବଂଶର ତ୍ରୀଅମିକ ରାଜାମାନଙ୍କର ଗୃହୀତ ବିରୁଦ ସେହି ଦୁଇ ବଂଶର ସମାନ ଗୋତ୍ରର ପ୍ରମାଣ ଦିଏ । ପ୍ରକୃତତଃ ଗଙ୍ଗା ଓ ଶୈଳୋଦ୍ଭବ ଉଭୟ ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ସମାନ ଅଟେ ।

ବଂଶଲତା ବିଚାର କଲେ ବୁଝାପଡ଼େ ଯେ ଗଙ୍ଗମାନେ ସୋମ-ବଂଶୀୟ ତୁର୍ବସୁଙ୍କ ବଂଶଧର ଥିଲେ । ସେମାନେ ଆତ୍ରେୟ ଗୋତ୍ରୀୟ । ତୁର୍ବସୁଙ୍କ କେହି ପୂର୍ବପୁରୁଷ ପ୍ରତିଷ୍ଠାନ କିମ୍ବା ପ୍ରୟାଗରେ ରାଜତ୍ୱ କରୁଥିଲେ । ତୁର୍ବସୁ ସେଠାରୁ ମହୀସୁର ବା ମହାରାଷ୍ଟ୍ର ଅଞ୍ଚଳକୁ

ଆସିଥିଲେ । ଭୂବସୁଙ୍କ ପୁତ୍ର ଗାଙ୍ଗେୟ ସେଠାରେ ରାଜା ହୋଇଥିଲେ । ଚତୁର୍ଦ୍ଦଶ ଶତକର ଓଡ଼ିଶାର ରାଜା ନରସିଂହ ଦେବଙ୍କର କେନ୍ଦୁଝର ତାମ୍ରଶାସନରୁ ଜଣାଯାଏ ଯେ ଗାଙ୍ଗେୟଙ୍କ ଜଣେ ବଂଶଧର କାମାର୍ଣ୍ଣବ ଓ ତାଙ୍କ ଗୃହ ଭାଇ ମଠହନ୍ଦ୍ରଗିରର ଚତୁଃପାର୍ଶ୍ୱବର୍ତ୍ତୀ ଭୂଭାଗ ଜୟ କରିଥିଲେ । ଏହା ପାଖାପାଖି କଳିଙ୍ଗ ରାଜ୍ୟ ସ୍ଥାପନ କରିଥିଲେ । ଅନନ୍ତ ବର୍ମା ଚୋଡ଼ଗଙ୍ଗ ଦେବ ତାଙ୍କ କେନ୍ଦୁ ତାମ୍ରଶାସନରେ ଗାଙ୍ଗେୟଦେବଙ୍କଠାରୁ ଗାଙ୍ଗେୟ ବଂଶଲତା ଦେଇଛନ୍ତି । ସେହି ତାମ୍ରଶାସନରୁ ଜଣାଯାଏ ଯେ ଗାଙ୍ଗେୟବଂଶରେ କୋଳାହଳ କୋଳାହଳପୁର ବା ଆଧୁନିକ କୋଲପୁର ସ୍ଥାପନ କରିଥିଲେ । କାମାର୍ଣ୍ଣବ କୋଳାହଳପୁରରୁ ଆସି କଳିଙ୍ଗ ରାଜ୍ୟ ସ୍ଥାପନ କରିଥିଲେ । କଳିଙ୍ଗର ଗୃହ ପ୍ରଦେଶରେ ଗୃହ ଭାଇଙ୍କୁ ସାମନ୍ତ ରୂପେ ପ୍ରତିଷ୍ଠା କରି କାମାର୍ଣ୍ଣବ ନିଜକୁ କଳିଙ୍ଗର ରାଜା ବୋଲି ଘୋଷଣା କରିଥିଲେ ଖ୍ରୀଷ୍ଟ ଷଷ୍ଠ ଶତକରେ । ତାଙ୍କ ରାଜଧାନୀ ହେଲା ଦନ୍ତପୁର ।

କୋଳାହଳପୁରର ଅନ୍ୟ ଏକ ଶାଖା କାବେରୀ ନଦୀର ଉତ୍ପତ୍ତିସ୍ଥାନ କଙ୍କଣ ଅଞ୍ଚଳରେ ଖ୍ରୀଷ୍ଟ ଦ୍ୱିତୀୟ ଶତକରେ ଅନ୍ୟ ଏକ ରାଜ୍ୟ ସ୍ଥାପନ କରିଥିଲେ । ସେମାନଙ୍କୁ ପଶ୍ଚିମ ଗଙ୍ଗବଂଶ ଏବଂ ଦନ୍ତପୁରର ଗଙ୍ଗମାନଙ୍କୁ ପୂର୍ବଗଙ୍ଗବଂଶ * କହାଯାଏ ।

ଶୈଳୋଦ୍ଭବ ଓ ପୂର୍ବ ଗଙ୍ଗବଂଶ ମଧ୍ୟରେ ବରାମ୍ବାର ଯୁଦ୍ଧ ଚାଲୁଥିଲା । ପୂର୍ବଗଙ୍ଗବଂଶର ଦେବେନ୍ଦ୍ରବର୍ମା ଦନ୍ତପୁରରୁ କଳିଙ୍ଗ-

* The Prachi, Vol.I—Part IV, 1932, PP. 28-34—Sri Satyanarayana Rajguru.

ନଗରକୁ ରାଜଧାନୀ ଉଠାଇ ନେଇଥିଲେ । ମହେନ୍ଦ୍ରଗିରିର ଗୋକର୍ଣ୍ଣେଶ୍ୱର ଶିବଙ୍କ ଆରାଧନା ନିମନ୍ତେ ଦେବେନ୍ଦ୍ର ବର୍ମା କଳିଙ୍ଗନଗରରୁ ଏକ ତାମ୍ରଶାସନ ଘୋଷଣା କରିଛନ୍ତି । ତାଙ୍କ ପ୍ରତି ଷଷ୍ଠବର୍ମା ପରାକ୍ରମ ସଞ୍ଚୟ କରି ନିଜକୁ "ସକଳ କଳିଙ୍ଗାଧିପତି" ଅଭିଖ୍ୟାରେ ଅଭିହିତ କରିଥିଲେ । ଅଳ୍ପଦିନ ପରେ ଦ୍ୱିତୀୟ ପୁଲକେଶୀ ଚାଳୁକ୍ୟ କଳିଙ୍ଗ ଆକ୍ରମଣ କରି ସେମାନଙ୍କ କ୍ଷମତା ଧ୍ୱଂସ କରିଥିଲେ ।

ଭୌମଙ୍କର ବଂଶ ଯାଜପୁରରେ ରାଜତ୍ୱ କରୁଥିଲେ । ଏହି ବଂଶରେ ଏକ ଶାଖା କାମରୂପରେ ରାଜତ୍ୱ କରୁଥିଲେ । ଭୌମ ଶବ୍ଦର ଅର୍ଥ ଭୂମିରୁ ଜାତ ବା ଆଦିମ । ସମ୍ଭବତଃ ଏମାନେ ଶୂଲିକ ରାଜବଂଶର ସଂଶ୍ଳିଷ୍ଟ । ଶୂଲିକ ବଂଶର ଏକ ଶାଖା କାମରୂପରେ ରାଜତ୍ୱ କରୁଥିଲେ ।

ତାମ୍ରଶାସନମାନଙ୍କରୁ ଭୌମ ବଂଶର ନିମ୍ନ ବଂଶଲତା ସଂଗୃହୀତ ହୋଇଅଛି :—

ଲକ୍ଷ୍ମୀକର

|

କ୍ଷେମଙ୍କର

|

ଶିବକର (୧) ବା ଉନ୍ମତ୍ତକେଶରୀ

|

ଶୁଭଙ୍କର (୧)

|




ଭୌମକର ବଂଶର ବଂଶାବଳୀରୁ ବୁଝାପଡ଼େ ଯେ ଏହି ବଂଶ ଏକାଦିକ୍ରମେ ଶିବକର, ଶୁଭକର ବା ଶାନ୍ତିକର ବୋଲାଉଥିଲେ । ଶୈଳୋଦ୍ଭବ ଓ ତୁଙ୍ଗଙ୍କ ବଂଶ ସଙ୍ଗେ ଏମାନେ ଯୁଦ୍ଧ କରିଥିଲେ ଏବଂ ଶୈଳୋଦ୍ଭବ ବଂଶର ଉଚ୍ଛେଦ ସାଧନ କରିଥିଲେ ।

ଶାନ୍ତିକର ଲଳିତହାରଙ୍କ ପରେ ସମ୍ଭବତଃ ତାଙ୍କ ନାବାଳକ ପୁତ୍ର ଶୁଭକର କୁସୁମହାର ଭୌମକର ବଂଶର ରାଜା ହେଲେ ।

ତାଙ୍କ ତରଫରୁ ତାଙ୍କ ମାତା ରାଣୀ ତ୍ରିଭୁବନ ମହାଦେବୀ ଶାସନଦଣ୍ଡ ପରିଚାଳନ କରୁଥିଲେ । ମନେହୁଏ, ତ୍ରିଭୁବନ ମହାଦେବୀ ପୃଥିବୀର ପ୍ରଥମ ରାଜଦଣ୍ଡପତ୍ନୀ । ଚତୁର୍ଥ ଶୁଭକରଙ୍କ ଉତ୍ତରାଧିକାରୀ ନ ଥିବାରୁ ତାଙ୍କ ରାଣୀ ଦଣ୍ଡୀ ମହାଦେବୀ ରାଜସିଂହାସନରେ ବସିଥିଲେ । ତ୍ରିଭୁବନ ମହାଦେବୀ ଓ ଦଣ୍ଡୀ ମହାଦେବୀଙ୍କ ଇତିହାସରୁ ତଦାନୀନ୍ତନ ଉତ୍କଳର ନାରୀସ୍ୱତ୍ୱ ସମ୍ବନ୍ଧରେ କିଛି ଆଭାସ ମିଳେ । ଦଣ୍ଡୀଙ୍କ ପରେ ଏହି ବଂଶର ଇତିହାସ ମିଳି ନାହିଁ । ସମ୍ଭବତଃ କୋଶଳର ସୋମଗୁପ୍ତମାନେ ଯାଜପୁର ରାଜ୍ୟ ଅଧିକାର କରିଥିଲେ । ଭୌମକର ବଂଶର ବହୁ ତାମ୍ରଶାସନ ମିଳିଛି, ଯହିଁରେ ସେମାନେ ବ୍ରାହ୍ମଣମାନଙ୍କୁ ଅନେକ ଗ୍ରାମ ଦାନ କରିଛନ୍ତି ।

ମୌଖାରି ରାଜା ଈଶାନ ବର୍ମାଙ୍କ ହରହା ଶିଳାଲେଖରୁ ଜଣାଯାଇଛି ଶୂଲିକ ରାଜବଂଶର କଥା । ଏହି ଶିଳାଲେଖ ଖୋଦିତ ହୋଇଥିଲା ବିକ୍ରମ ସମ୍ବତ୍ ୬୧୧ରେ । ଈଶାନବର୍ମା ଶୂଲିକ ରାଜାଙ୍କୁ ପରାସ୍ତ କରିଥିଲେ । ଶୂଲିକମାନଙ୍କର ଏକ ଦୁର୍ଜେୟ ଅଶ୍ୱସେନା ଥିଲା । ଶୂଲିକ ରାଜବଂଶର କେତେକ ତାମ୍ରଶାସନ ଏବେ ଢେଙ୍କାନାଳ ଅଞ୍ଚଳରେ ଆବିଷ୍କୃତ ହୋଇଛି । କାଞ୍ଚନସ୍ତମ୍ଭ ଓ ତାଙ୍କ ପୁତ୍ର କୁଳସ୍ତମ୍ଭ ଶୂଲିକ ରାଜବଂଶର ପ୍ରଥମ ଦୁଇ ରାଜା ଥିଲେ । କାଞ୍ଚନସ୍ତମ୍ଭ ପ୍ରଥମେ ଜଣେ ସାମନ୍ତ ମହାସାମନ୍ତ ଥିଲେ । ତାଙ୍କ ପୁତ୍ର ରଣସ୍ତମ୍ଭ 'ମହାରାଜାଧିରାଜ' ହୋଇଥିଲେ । ରଣସ୍ତମ୍ଭଙ୍କ ପୁତ୍ର 'ମହାରାଜାଧିରାଜ' ଜୟସ୍ତମ୍ଭ ।

ତାମ୍ରଶାସନମାନଙ୍କରୁ ଜଣାଯାଏ ଯେ ଶୂଲିକମାନେ ରାଢ଼ (ମୟୂରଭଞ୍ଜ, ମେଦିନୀପୁର, ହୁଗୁଳି ଓ ବର୍ଦ୍ଧମାନ ଅଞ୍ଚଳ) ର

ଅଧିପତି ଥିଲେ । କୋଦାଳିଆ ଏମାନଙ୍କର ରାଜଧାନୀ ଥିଲା ଏବଂ ସ୍ତମ୍ଭେଶ୍ୱରୀ (ଖମ୍ଭେଶ୍ୱରୀ) କୁଳଦେବତା ଥିଲେ । ସ୍ତମ୍ଭେଶ୍ୱରୀ ଆଦିମ-ମାନଙ୍କର ଦେବତା । ଶୁଲ୍କିମାନେ ନିଜକୁ ଗଣ୍ଡମାନଙ୍କର ଅଧିପତି ବୋଲି ବର୍ଣ୍ଣନା କରିଛନ୍ତି । ବୌଦ, ଆଠମଲ୍ଲିକ, ନୟାଗଡ଼, ରେଢ଼ାଖୋଲ ପ୍ରଭୃତି ଅଞ୍ଚଳର ଗଣ୍ଡ, କନ୍ଧ, ଡମ୍ବ ପ୍ରଭୃତି ଜାତିମାନେ ଏପର୍ଯ୍ୟନ୍ତ ସ୍ତମ୍ଭେଶ୍ୱରୀଙ୍କୁ ପୂଜା କରୁଛନ୍ତି ।

ମେଦିନୀପୁର ଜିଲ୍ଲାରେ ଏପର୍ଯ୍ୟନ୍ତ କୋଦାଳିଆ ବୋଲି ନଗାହିଏ ଗ୍ରାମ ଅଛି । ଶୁଲ୍କି ନାମରେ ଏକ ଚଷା ଜାତି ସେଠାରେ ବାସ କରନ୍ତି । ଏହି କୋଦାଳିଆ ପୂର୍ବକାଳରେ ସମ୍ଭବତଃ ଏକ ନଗର ଓ ଶୁଲ୍କି ରାଜଧାନୀ ଥିଲା ।

ଠିକ୍ ଏହି ବର୍ଣ୍ଣିତ ସମୟରେ ଏକ ସ୍ତମ୍ଭ ବଂଶ ଆସାମ ଖଣ୍ଡରେ ରାଜତ୍ୱ କରୁଥିଲେ । ସେହି ବଂଶର ପ୍ରଧାନ ରାଜା ଶାଳସ୍ତମ୍ଭ, ବଜ୍ରସ୍ତମ୍ଭ, ପାଳକସ୍ତମ୍ଭ ଓ ବଜସ୍ତମ୍ଭ * । ଅନୁମାନ କରାଯାଏ, ଗଡ଼ର ଶୁଲ୍କିମାନେ ଓ ଆସାମର ସ୍ତମ୍ଭମାନେ ଏକ ଆଦିମ ଜାତିର ଲୋକ ଥିଲେ । ଓଡ଼ିଶାର ବୌଦ ଅଞ୍ଚଳରୁ ଆସାମ ଅଞ୍ଚଳ ପର୍ଯ୍ୟନ୍ତ ଆଦିମମାନେ ସେତେବେଳେ ଶାସନ କ୍ଷମତାରେ ଥିଲେ ।

ସ୍ତମ୍ଭ ଓ ଶୁଲ୍କି ବଂଶ ଦ୍ୱୟର ଇତିହାସରୁ ଜଣାଯାଏ ଯେ ସେମାନେ ଆର୍ଯ୍ୟ ଧର୍ମ ଓ ସଂସ୍କୃତି କ୍ରମେ ଗ୍ରହଣ କରୁଥିଲେ । ଗଡ଼ର

* History of Assam, P. 27—Gait.

କୁଳସ୍ତମ୍ଭ ଶୈବ ଥିଲେ ଏବଂ ସ୍ତମ୍ଭେଶ୍ୱରୀ ସେମାନଙ୍କର କୁଳଦେବତା ଥିଲେ ।

## ସ୍ତମ୍ଭ ବଂଶାବଳୀ




ପଶ୍ଚିମ ଓଡ଼ିଶାର ମହାକୋଶଳ ଓ ମହାକାନ୍ତାର ମଧ୍ୟରୁ ମହାକାନ୍ତାର ଥିଲା ଆଧୁନିକ କଳାହାଣ୍ଡି, ବସ୍ତର ଓ ହାଇଦ୍ରାବାଦର ପୂର୍ବାଞ୍ଚଳ । ମହାକାନ୍ତରର ରାଜା ବ୍ୟାଘ୍ରରାଜ ସମୁଦ୍ରଗୁପ୍ତଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ଏହି ବ୍ୟାଘ୍ରରାଜ ଉଚ୍ଛକଳ୍ପ ବଂଶୀୟ ଥିଲେ । ମଗଧର ଗୁପ୍ତ ସାମ୍ରାଜ୍ୟ ଏବଂ ପଶ୍ଚିମର ବାକାଟକ ରାଜ୍ୟର ସନ୍ଧିରେ ଥିଲା ମହାକାନ୍ତାର । ମହାକାନ୍ତାରର ଉଚ୍ଛକଳ୍ପ ବଂଶରେ ନିମ୍ନଲିଖିତ ରାଜାମାନଙ୍କର ନାମ ଦେଖିବାକୁ ମିଳେ ।

ଓଘଦେବ
କୁମାରଦେବ
ଜୟସ୍ବାମୀ
ବ୍ୟାଘ୍ରଦେବ
ଜୟନାଥ (ଗୁପ୍ତାବ୍ଦ ୧୭୪-୧୭୭ =
ଖ୍ରୀଷ୍ଟାବ୍ଦ ୪୯୩—୪୯୬)
ସର୍ବନାଥ (ଖ୍ରୀଷ୍ଟାବ୍ଦ ୫୧୨—୫୩୪) । *

ବ୍ୟାଘ୍ରଦେବ ବା ବ୍ୟାଘ୍ରରାଜ ପୃଥ୍ୱୀସେନ ବାକାଟକଙ୍କ ସାମନ୍ତରାଜା ଥିଲେ ଏବଂ ପୃଥ୍ୱୀସେନଙ୍କ ପୁତ୍ର ରୁଦ୍ରସେନ ଗୁପ୍ତ ରାଜକୁମାରୀ ପ୍ରଭାବତୀଙ୍କୁ ବିବାହ କରିଥିଲେ । ଅତଏବ ଶଂସିତ ବ୍ୟାଘ୍ରଦେବ ଉଚ୍ଛକଳ୍ପ ଥିଲେ ପ୍ରୟାଗ ସ୍ତମ୍ଭବର୍ଣ୍ଣିତ କାନ୍ତାରକର ରାଜା ବ୍ୟାଘ୍ରରାଜ । ଜୟନାଥ ଓ ସର୍ବନାଥ ବାକାଟକ ବଂଶରେ ପରାଧୀନତାରୁ ମୁକ୍ତ ହୋଇଥିଲେ । ସମ୍ଭବତଃ ସେମାନେ ସମୁଦ୍ରଗୁପ୍ତଙ୍କ ଦିଗ୍-ବିଜୟ ପରେ ଗୁପ୍ତ ସାମ୍ରାଜ୍ୟକୁ କର ଦେଉଥିଲେ ।

ଉଚ୍ଛକଳ୍ପମାନେ ଏକ ସ୍ଥାନୀୟ ରାଜବଂଶ ଥିଲେ ଏବଂ ଅାନ୍ଧ୍ରମାନଙ୍କ ପତନ ପରେ ସେମାନେ କାନ୍ତାରକରେ ଏକ ସ୍ବାଧୀନ ରାଜ୍ୟ ସ୍ଥାପନ କରିଥିଲେ । ପରବର୍ତ୍ତୀ ବାକାଟମାନେ ସେମାନଙ୍କୁ କରଦ

* Ancient India and South Indian History and Culture, Vol. I—S. Krishnaswami Aiyangar—Oriental Book Agency, Poona.

ରାଜବଂଶରେ ପରିଣତ କରିଥିଲେ । ସମୁଦ୍ରଗୁପ୍ତଙ୍କ ଅଭିଯାନ ଫଳରେ ସେମାନେ ବାକାଟକମାନଙ୍କ କ୍ଷମତାରୁ ମୁକ୍ତିଲାଭ କରିଥିଲେ ।

କାନ୍ତାରକ ଅନ୍ତଃପାତୀ ଆଧୁନିକ କଳାହାଣ୍ଡିର ଖଇରପଦର (ଖଦିର ପଦ୍ରକ) ଓ ବେଳପଦର (ବୈଦ୍ୟପଦ୍ରକ) ନାମର ଦୁଇ ଖଣ୍ଡ ଗ୍ରାମ ସୋମଗୁପ୍ତ ବଂଶୀୟ ବାଳାର୍ଜୁନ ମହାଶିବଗୁପ୍ତ ( ଖ୍ରୀ: ଅ: ୭୧୫-୬୪୦ ) ଏକ ଶିବ ମନ୍ଦିରକୁ ଦାନ କରିଥିଲେ * । ସେଥିରୁ ବୁଝାପଡେ ଯେ ସୋମଗୁପ୍ତମାନେ ମହାକାନ୍ତାର ବା କାନ୍ତାରକର ଉଚ୍ଛକଳ୍ପ ରାଜ୍ୟ ଅଧିକାର କରି ନେଇଥିଲେ । ଏକାଦଶ ଶତକରେ ଓଡ଼ିଶାର ବିଖ୍ୟାତ ଗଙ୍ଗବଂଶର ରାଜତ୍ୱକାଳ ପର୍ଯ୍ୟନ୍ତ କାନ୍ତାରକର ଅନ୍ୟ କୌଣସି ତଥ୍ୟ ମିଳେ ନାହିଁ । ଖଡ଼ିଆଳ ଓ କଳାହାଣ୍ଡି ମଝିରେ ଥିବା ଦେଓଭୋଗ ( ଦେବାଭୋଗ ବିଷୟ ) ଏଥିରୁ ଉଚ୍ଛକଳ୍ପ ରାଜ୍ୟ ବା କୋଶଳ ରାଜ୍ୟର ଅନ୍ତର୍ଗତ ଥିଲା † ।

---

* Lodhia Copperplate of Mahasiva Gupta Balarjun— Journal of the Kalinga Historical Research Society, Vol. II, No. 2– P. 121.

† Cuttack Copperplate of Bhimarath Mahasivagupta----Mahakosala Historical Society's Papers-- Vol.II, PP. 30-32.

ରାଜବଂଶରେ ପରିଣତ କରିଥିଲେ । ସମୁଦ୍ରଗୁପ୍ତଙ୍କ ଅଭିଯାନ ଫଳରେ ସେମାନେ ବାକାଟକମାନଙ୍କ କ୍ଷମତାରୁ ମୁକ୍ତିଲାଭ କରିଥିଲେ ।

କାନ୍ତାରର ଅନ୍ତଃପାତୀ ଆଧୁନିକ କଳାହାଣ୍ଡିର ଖଇରପଦର (ଖଦିର ପଦ୍ରକ) ଓ ବେଳପଦର (ବୈଲ୍ୟପଦ୍ରକ) ନାମର ଦୁଇ ଖଣ୍ଡ ଗ୍ରାମ ସୋମଗୁପ୍ତ ବଂଶୀୟ ବାଳାର୍ଜୁନ ମହାଶିବଗୁପ୍ତ ( ଖ୍ରୀ: ଅ: ୬୧୪-୬୪୦ ) ଏକ ଶିବ ମନ୍ଦିରକୁ ଦାନ କରିଥିଲେ * । ସେଥିରୁ ବୁଝାପଡ଼େ ଯେ ସୋମବଂଶୀମାନେ ମହାକାନ୍ତାର ବା କାନ୍ତାରକର ଅଧିକାଂଶ ରାଜ୍ୟ ଅଧିକାର କରି ନେଇଥିଲେ । ଏକାଦଶ ଶତକରେ ଓଡ଼ିଶାର ବିଖ୍ୟାତ ଗଙ୍ଗବଂଶର ରାଜତ୍ୱକାଳ ପର୍ଯ୍ୟନ୍ତ କାନ୍ତାରକର ଅନ୍ୟ କୌଣସି ତଥ୍ୟ ମିଳେ ନାହିଁ । ଖଡ଼ିଆଳ ଓ କଳାହାଣ୍ଡି ମଝିରେ ଥିବା ଦେଓଭୋଗ ( ଦେବାଭୋଗ ବିଷୟ ) ଏହି ଅଞ୍ଚଳର ରାଜ୍ୟ ବା କୋଶଳ ରାଜ୍ୟର ଅନ୍ତର୍ଗତ ଥିଲା † ।

---

* Lodhia Copperplate of Mahasiva Gupta Balarjun— Journal of the Kalinga Historical Research Society, Vol. II, No. 2– P. 121.

† Cuttack Copperplate of Bhimarath Mahasivagupta----Mahakosala Historical Society's Papers-- Vol.II, PP. 30-32.

୧୮

(୭)

# ଓଡ଼ିଶାର ସୋମଗୁପ୍ତ ବଂଶ

ଐତରେୟ ଓ ଶତପଥ ବ୍ରାହ୍ମଣରୁ ଜଣାଯାଏ ଯେ ଆର୍ଯ୍ୟମାନଙ୍କର ତିନୋଟି ପ୍ରଧାନ ଉପନିବେଶ ଥିଲା । "ଧ୍ରୁବା ମଧ୍ୟମାଦିଶ" ସେହି ଉପନିବେଶମାନଙ୍କର କେନ୍ଦ୍ର ଥିଲା । ଧ୍ରୁବା ମଧ୍ୟମା ଦିଶ ବୋଇଲେ ସରସ୍ୱତୀ ଓ ଗଙ୍ଗା ନଦୀଦ୍ୱୟର ଅନ୍ତର୍ବର୍ତ୍ତୀ ଅଞ୍ଚଳ । କୁରୁ ଓ ପଞ୍ଚାଳମାନେ ତହିଁର ଅଧିବାସୀ ଥିଲେ । ଆର୍ଯ୍ୟମାନଙ୍କର ଦ୍ୱିତୀୟ ପ୍ରଧାନ ଉପନିବେଶ ଥିଲା ସରଯୂ, ବାରଣାବତୀ (=ଚର୍ମଣ୍ୱତୀ ବା ଚମ୍ବଲ) ଓ ସଦାନୀରା ନଦୀତ୍ରୟ ବେଷ୍ଟିତ ଅଞ୍ଚଳ । ଅର୍ଥାତ୍ ଉତ୍ତର କୋଶଳ (ଅଯୋଧ୍ୟା ଅଞ୍ଚଳ), କାଶୀ ଓ ବିଦେହ ଦେଇ ଆର୍ଯ୍ୟମାନଙ୍କର ଦ୍ୱିତୀୟ ଉପନିବେଶ ଗଠିତ ହୋଇଥିଲା । ଦାକ୍ଷିଣାତ୍ୟ ସେମାନଙ୍କର ତୃତୀୟ ଉପନିବେଶ । ବିଦର୍ଭ ବା ଭୋଜ ବଂଶ ଦକ୍ଷିଣର ପ୍ରଥମ ଉପନିବେଶ ସ୍ଥାପନ କରିଥିଲେ । ଉଆର୍ଦ୍ଧା ନଦୀ ତୀରବର୍ତ୍ତୀ ଏହି ଉପନିବେଶ ସ୍ଥାପନକର୍ତ୍ତା ଆର୍ଯ୍ୟଶାଖାର ନାମାନୁସାରେ ବିଦର୍ଭ ବୋଲି ନାମିତ ହୋଇଥିଲା । ଐତରେୟ ବ୍ରାହ୍ମଣର ବର୍ଣ୍ଣନା ଅନୁସାରେ ଆର୍ଯ୍ୟାବର୍ତ୍ତ ଉତ୍ତରକୁରୁ ଓ ଉତ୍ତରମଦ୍ରଠାରୁ ଶାତ୍ୱତ ଓ ଭୋଜମାନଙ୍କର ନିବାସଭୂମି ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଭୋଜ ଶାଖା ବିଦର୍ଭ ବା ଉଆର୍ଦ୍ଧା-

ନଦୀତୀର ଅଞ୍ଚଳରେ ଏବଂ ଶାତ୍ୱତଙ୍କ ଶାଖା ସୌରାଷ୍ଟ୍ର ଓ ଦକ୍ଷିଣ ଗଙ୍ଗ-ପ୍ରାନ୍ତରେ ବସତି ସ୍ଥାପନ କରିଥିଲେ । ବିଦର୍ଭରେ ପ୍ରବାହିତ ନଦୀର ନାମ ନିର୍ବିନ୍ଧ୍ୟା ବା ଜୁଆର୍ଦ୍ଧୀ । ଏ କଥାରୁ ସ୍ପଷ୍ଟ ପ୍ରତୀତ ହେବ ଯେ ବିଦର୍ଭର ସୀମା ମାଳବରୁ ଜୁଆର୍ଦ୍ଧୀ-ବିଧୌତ ଅଞ୍ଚଳ ପର୍ଯ୍ୟନ୍ତ ଅର୍ଥାତ୍ ଗୋଦାବରୀର ଉତ୍ପତ୍ତି ସ୍ଥାନ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

ବୈଦିକ ଶାସ୍ତ୍ରନିଚୟରୁ ଜଣାପଡ଼େ ଯେ କଳିଙ୍ଗ ଓ ଅନ୍ଧ୍ର ବିଦର୍ଭର ସନ୍ନିହିତ ଥିଲା । ତିନି ଦେଶରେ ଅନ୍ତର୍ବର୍ତ୍ତୀ ଦେଶରୂପେ କୌଣସି ଦେଶର ଉଲ୍ଲେଖ ନାହିଁ । ଭୋଜକମାନେ କଳିଙ୍ଗରେ ଏବଂ ଶାତ୍ୱତମାନେ ଆନ୍ଧ୍ରରେ ବସତି ସ୍ଥାପନ କରିଥିଲେ । କଳିଙ୍ଗ ବୈତରଣୀ-ମହାନଦୀ ଅବବାହିକାରେ ଏବଂ ଆନ୍ଧ୍ର ଗୋଦାବରୀ-କୃଷ୍ଣା ମଧ୍ୟରେ ରହିଥିଲା । ଆନ୍ଧ୍ର ଶବ୍ଦର ନାମକରଣ ହୋଇଅଛି ଅନ୍ଧକ ଶବ୍ଦରୁ । ଶାତ୍ୱତ ବଂଶର ଶାଖା ଅନ୍ଧକମାନଙ୍କର ନିବାସ ରୂପେ ଆନ୍ଧ୍ରର ନାମକରଣ ହୋଇଥିଲା । ତାମିଲ ଭାଷାରେ କୃଷ୍ଣ, କରି ଓ କଳି ତିନି ଶବ୍ଦ ଗୋଟିଏ ଧାତୁରୁ ନିଷ୍ପନ୍ନ ହୋଇଅଛି । ଶାତ୍ୱତ ବଂଶର ପ୍ରଧାନ ପୁରୁଷ କୃଷ୍ଣ । ତାଙ୍କ ବଂଶଧରମାନେ କଳୀଙ୍ଗ ବା କଳିଙ୍ଗ ଦେଶ ସ୍ଥାପନ କରିଥିଲେ । ପାଣ୍ଡବ ଅର୍ଜ୍ଜୁନ ଯେତେବେଳେ କୃଷ୍ଣଙ୍କ ପିଣ୍ଡ ଦହନ କଲେ, ପିଣ୍ଡାବଶେଷ ସମୁଦ୍ରରେ ଭାସି ଭାସି ଆସି ଓଡ଼ିଶାର ସମୁଦ୍ର ଉପକୂଳରେ ଲାଗିଲା । ସେହି ପିଣ୍ଡାବଶେଷରୁ ଜଗନ୍ନାଥଙ୍କ ଦାରୁବ୍ରହ୍ମ ମୂର୍ତ୍ତି ଗଠିତ ହୋଇଥିଲା । ସମ୍ଭବତଃ କୃଷ୍ଣଙ୍କ ବଂଶଧରମାନେ କଳିଙ୍ଗ ସ୍ଥାପନ କରିଥିବାରୁ ସେହି ଐତିହାସିକ ଘଟଣା ଉପରେ ଜଗନ୍ନାଥଙ୍କ ଦାରୁବ୍ରହ୍ମ ମୂର୍ତ୍ତିଗଠନ କିମ୍ବଦନ୍ତୀ ପ୍ରତିଷ୍ଠିତ ହୋଇଅଛି ।

ଗୟାସୁର ଉପାଖ୍ୟାନ ଅନୁସାରେ ଶାକ୍ତ ଭୋଜମାନେ ସ୍ଥାପନ କରିଥିଲେ ଅଙ୍ଗ, ବଙ୍ଗ ଓ କଳିଙ୍ଗ । ତେଣୁ ଆର୍ଯ୍ୟମାନେ ଯାଦବ ବା ଶାକ୍ତମାନଙ୍କୁ ପତିତ ଶ୍ରେଣୀରେ ଗଣନା କରୁଥିଲେ * । ପୁରାଣମାନଙ୍କରେ ଶ୍ରୀକୃଷ୍ଣ ଗୋପାଳ ରୂପେ ବର୍ଣ୍ଣିତ ହୋଇଛନ୍ତି ।

ବିଦର୍ଭର ରଜା ଶିଶୁପାଳ ଚେଦୀବଂଶୀୟ । ଚେଦୀମାନେ ଶାକ୍ତବଂଶର ଏକ ଶାଖା । କଳିଙ୍ଗର ଖାରବେଳ ଜୈନ ମଧ ଚେତ ବା ଚେଦୀବଂଶୀୟ । ଅନୁମାନ କରାଯାଏ ଯେ ଖାରବେଳ ବିଦର୍ଭରାଜ ଶିଶୁପାଳଙ୍କର କମ୍ବା ଶାକ୍ତ ଯାଦବମାନଙ୍କର ବଂଶଧର ଥିଲେ । ବିଦର୍ଭ ସ୍ଥାପନର ଅବ୍ୟବହିତ ପରେ କଳିଙ୍ଗ ଓ ଆନ୍ଧ୍ର ସ୍ଥାପିତ ହୋଇଥିବାରୁ ତିନି ଦେଶର ଏକତ୍ର ଉଲ୍ଲେଖ ରହିଛି ଐତରେୟ ବ୍ରାହ୍ମଣରେ ।

ରମାୟଣର ବାଳକାଣ୍ଡ, ୧୩ଶ ସର୍ଗ, ୨୬-୨୭ ଶ୍ଳୋକ-ମାନଙ୍କରୁ ଜଣାଯାଏ ଯେ ଅଯୋଧ୍ୟାକୁ କେନ୍ଦ୍ର କରି ସର୍ଯୁତଟକୋଶଳ, କାଶୀକୁ କେନ୍ଦ୍ର କରି କାଶୀକୋଶଳ ଏବଂ ବିନ୍ଧ୍ୟର ପୂର୍ବ ଦିଗରେ ଓ ଗଙ୍ଗାର ଦକ୍ଷିଣ ଦିଗରେ ଦକ୍ଷିଣ କୋଶଳ ଥିଲା ¶ । ଏହି ଶେଷୋକ୍ତ କୋଶଳ ପ୍ରାକ୍ତନ ବିଦର୍ଭର ଏକ ଅଂଶବିଶେଷ ।

* ମନୁସଂହିତା—ଦଶମ ଅଧ୍ୟାୟ— ୨୩ ଶ୍ଳୋକ : ଶାତ୍ୱିତ ଯାଦବ ବଂଶ ବୈଶ୍ୟବ୍ରାତ ରୂପେ ବର୍ଣ୍ଣିତ ।

¶ ଉତ୍ତରକାଣ୍ଡ, ୪-୫ ସର୍ଗ, ଶ୍ଳୋକ ୧୦୮ ।

ବୈଦର୍ଭ ଥିଲ ଦକ୍ଷିଣା ପଥରେ * । ମହାଭାରତରୁ ଜଣାଯାଏ ଯେ ବିଦର୍ଭ ଦଣ୍ଡକାରଣ୍ୟ ସଙ୍ଗେ ସଂଯୁକ୍ତ ଥିଲ । ବିଦର୍ଭର ଅନ୍ତର୍ଗତ ରାଜ୍ୟମାନ ଥିଲ କାନ୍ତାରକ † ଓ ବେଣ୍ଣାପୁର § । କାନ୍ତାରକ ବେଣାତଟରେ ଅର୍ଥାତ୍ କୃଷ୍ଣବେଣା (କୃଷ୍ଣା), ଭୀମବେଣା (ଭୀମା) ଓ ତୁଙ୍ଗବେଣା (ତୁଙ୍ଗଭଦ୍ରା) ନଦୀମାନଙ୍କର ଅବସ୍ଥିତ ପ୍ରଦେଶରେ ରହିଥିଲ ।

ଅଶୋକଙ୍କ ଅନୁଶାସନରୁ ଜଣାଯାଏ ଯେ ତକାଳ ବିଦର୍ଭ ଦେଶ ସେତେବେଳେ ବହୁ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇଥିଲ ‡ । ରାଷ୍ଟ୍ରିକ, ପିତେନିକ ପ୍ରଭୃତି ରାଜ୍ୟ ସେହିସବୁ କ୍ଷୁଦ୍ର ରାଜ୍ୟ ମଧ୍ୟରୁ କେତେକ ଥିଲ । ଅଶୋକଙ୍କଦ୍ୱାରା ପରାଜିତ ଯେତେ ରାଜା କୋଶଳ (ଦକ୍ଷିଣ କୋଶଳ)ରେ ଆଶ୍ରୟ ନେଇଥିଲେ । ମାତ୍ର ମହାଭାରତରେ ତାହାର ଉଲ୍ଲେଖ ନାହିଁ । ତେଣୁ ଏହା ସ୍ୱତଃ ଜଣାଯାଏ ଯେ ମହାଭାରତ ରଚନାକାଳ ଓ ଅଶୋକଙ୍କ ରାଜତ୍ୱକାଳ ମଧ୍ୟରେ ଦକ୍ଷିଣ କୋଶଳର ନାମକରଣ ହୋଇଥିଲ ।

ଅଗ୍ନିମିତ୍ର ସୁଙ୍ଗ ବିଦର୍ଭର ରାଜାଙ୍କୁ ପରାସ୍ତ କରି ମଗଧର ସୀମା ଭର୍ଦ୍ଧା ନଦୀ ପର୍ଯ୍ୟନ୍ତ ପ୍ରସାର କରିଥିଲେ || । ଗଙ୍ଗାଠାରୁ

* ଭବଭୂତି, ମାଳତୀମାଧବ—"ଅସ୍ତି ଦକ୍ଷିଣାପଥେ ବିଦର୍ଭେଷୁ ପଦ୍ମପୁରଂ ନାମ ନଗରଂ ।"

† ମହାଭାରତଂ, ସଭାପର୍ବ, ଅଧ୍ୟାୟ ୩୧, ଶ୍ଳୋକ ୧୧-୧୨ ।

§ ମହାଭାରତଂ ସଭାପର୍ବ, ଅଧ୍ୟାୟ ୩୧, ଶ୍ଳୋକ ୭୨-୭୨ ।

‡ ଅଶୋକ ଶିଳାଲିପି ୧୩ ।

|| V.A. Smith–Early History of India, P. 188.

ଉଆଇର୍‌ ପର୍ଯ୍ୟନ୍ତ ଭୂଖଣ୍ଡ, ସେହି ଦିନଠାରୁ ଦକ୍ଷିଣ କୋଶଳ ନାମରେ ନାମିତ ହୋଇଥିଲା । ସମ୍ଭବତଃ ପୂର୍ବତନ ଶାଳ୍ୱ ବା ଯାଦବ ବଂଶୀୟ ଏକେହି ରାଜପୁତ ଅଗ୍ନିମିତ୍ରଙ୍କ ଦ୍ୱାରା ସେହି ଦକ୍ଷିଣ କୋଶଳର ସାମନ୍ତରାଜା ରୂପେ ନିଯୁକ୍ତ ହୋଇଥିଲେ । ଦକ୍ଷିଣ-କୋଶଳର ସାମନ୍ତରାଜା କାଳକ୍ରମେ ମଗଧର ଅଧୀନତାପାଶଗଣ୍ଡି ଛେଦନ କରିଥିଲେ ।

ସମୁଦ୍ରଗୁପ୍ତଙ୍କ ପ୍ରୟାଗସ୍ତମ୍ଭଲିପିରୁ ପ୍ରମାଣିତ ହୁଏ ଯେ ବିଦର୍ଭ ତିନି ପୃଥକ୍ ଅଞ୍ଚଳରେ ବିଭକ୍ତ ହୋଇଥିଲା : ମହାରାଷ୍ଟ୍ର (ରାଷ୍ଟ୍ରିକ), ମହାକୋଶଳ (କୋଶଳ) ଓ ମହାକାନ୍ତାର (କାନ୍ତାରକ) । ମହେନ୍ଦ୍ର କୋଶଳର ରାଜା ଥିଲେ ।

ହ୍ୱାଂ ତ୍ସାଂ କଳିଙ୍ଗରୁ ଉତ୍ତର ପଶ୍ଚିମ ଦିଗରେ ଯାଇ ପହଞ୍ଚିଲେ ମହାକୋଶଳରେ । ସେତେବେଳେ କଳିଙ୍ଗର ସୀମା ଆଶାତୀତ ଭାବରେ ସଙ୍କୁଚିତ ହୋଇଥିଲା ଏବଂ ତାହା ପରିଣତ ହୋଇଥିଲା ଏକ ଅତି କ୍ଷୁଦ୍ର ରାଜ୍ୟରେ (ବା ଆଧୁନିକ ଗଞ୍ଜାମ ଜିଲ୍ଲାର ପ୍ରାୟ ସମାନ ଆକାରରେ) । ତେଣୁ ଉପରୋକ୍ତ କୋଶଳ ବା ମହାକୋଶଳ ଗଞ୍ଜାମ ଜିଲ୍ଲାର ଠିକ୍ ଉତ୍ତର ପଶ୍ଚିମ କୋଣକୁ ଥିଲା । ଅଳ୍ପ କଥାରେ ଆଧୁନିକ ବୌଦ, ବଲାଙ୍ଗିରପାଟଣା, କଳାହାଣ୍ଡି, ସମ୍ବଲପୁର, ସୁନ୍ଦରଗଡ଼, ରାୟପୁର, ବିଳାସପୁର ପ୍ରଭୃତି ଜିଲ୍ଲାମାନ ଯେଉଁ କୋଶଳ ଗଠିତ ହୋଇଥିଲା । ଗୋଦାବରୀର ଉପନଦୀ ଇନ୍ଦ୍ରାବତୀ ଏହାର ଦକ୍ଷିଣ ସୀମା ଥିଲା । ହ୍ୱାଂ ତ୍ସାଂଙ୍କ

ବର୍ଣ୍ଣନା ଅନୁସାରେ କୋଶଳର ରାଜା ଜନ୍ମରୁ କ୍ଷତ୍ରିୟ ଏବଂ ନିଜେ ସାହିତ୍ୟର ପ୍ରେମିକ ଥିଲେ * ।

ଏହି କୋଶଳ ଅନ୍ତଃପାତୀ ରାୟପୁର ନଗରରୁ ପ୍ରାୟ ୪୦ ମାଇଲ ଦୂରରେ ଉତ୍ତରପୂର୍ବ ଦିଗରେ ମହାନଦୀ କୂଳରେ ଶ୍ରୀପୁର ନାମକ ଏକ ଗ୍ରାମ ଅଛି ¶ । ଶ୍ରୀପୁର ପ୍ରାଚୀନ କାଳରେ କୋ

* Colonel L.A. Waddel.

¶ ପ୍ରତ୍ନତତ୍ତ୍ୱ ବିଭାଗର ଚେଷ୍ଟାରେ ୧୯୫୫-୫୬ରେ ମୃତ୍ତିକା ଗର୍ଭରୁ ଉଦ୍ଧାର କରା ଯାଇଛି ଏହି ପ୍ରାଚୀନ ଶ୍ରୀପୁର ରାଜଧାନୀ । ସେଠାରୁ ଛଅ ଫୁଟ ଉଚ୍ଚ ଏକ ବୁଦ୍ଧମୂର୍ତ୍ତି, ବୌଦ୍ଧ ମନ୍ଦିର ଓ ବୌଦ୍ଧମଠ, ଶିଳାଲେଖ, ପ୍ରାଚୀନ ମୁଦ୍ରା ଓ ପ୍ରାଚୀନ ଚୀନଦେଶୀୟ ତାମ୍ରମୁଦ୍ରା ମିଳିଅଛି । ଏହି ରାଜଧାନୀ ମହାନଦୀର ବନ୍ୟାରେ ପୋତି ହେବା ପରେ ତଦୁପରିସ୍ଥ ମୃତ୍ତିକାସ୍ତରରେ କ୍ଷୁଦ୍ର ଶ୍ରୀପୁର ଗ୍ରାମ ବସିଛି ।

ଶ୍ରୀପୁର କେତେ କାଳରୁ ପ୍ରସିଦ୍ଧି ଲାଭ କରିଥିଲା, କେଉଁ କେଉଁ ବଂଶର ରାଜଧାନୀ ଥିଲା, ସେ ସମସ୍ତ ଇତିବୃତ୍ତ ରହିଛି ବିସ୍ମୃତି ଗର୍ଭରେ । ତେବେ ଶ୍ରୀପୁର ରାଜଧାନୀର ଆନ୍ତର୍ଭୌମ ନିଷ୍କାସନରୁ ଏହା ଅବିସମ୍ବାଦିତ ରୂପେ ଜଣା ପଡ଼ୁଛି ଯେ ଏହା ପ୍ରସିଦ୍ଧି ଲାଭ କରିଥିଲା ବୌଦ୍ଧଯୁଗରୁ ଏବଂ ଏକ ପ୍ରଧାନ ବୌଦ୍ଧପୀଠ ଥିଲା ।

ଗୁପ୍ତ ରାଜତ୍ୱକାଳରେ ପୌରାଣିକ ଧର୍ମର ପୁନରୁଦ୍ଧାର ଘଟିଥିଲା । ସୁତରାଂ ଶ୍ରୀପୁରର ପ୍ରଶସ୍ତି, ବୌଦ୍ଧମଠ, ବୌଦ୍ଧମନ୍ଦିର ଓ ବୌଦ୍ଧମୂର୍ତ୍ତି ଗୁପ୍ତ ରାଜତ୍ୱକାଳର ପ୍ରାକ୍‌କାଳୀନ, ଯାହା ସବୁ ଏବେ ଉଦ୍ଧାର କରାଯାଉଅଛି ଭୂଗର୍ଭରୁ । ସମ୍ଭବତଃ ଶ୍ରୀପୁର ମୌର୍ଯ୍ୟଯୁଗରେ ମଧ୍ୟ

ପର ପୃଷ୍ଠା ଦେଖ

ନଗର ତଥା କୋଶଳର ରାଜଧାନୀ ଥିଲା । ସେଠାରେ ପାଣ୍ଡବ ସୋମବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ସାର୍ ଏ. କନିଂହାମ କହନ୍ତି ଯେ ସୋମଗୁପ୍ତମାନେ ଶ୍ରୀପୁରରେ ରାଜତ୍ୱ କରୁଥିଲେ ଖ୍ରୀଷ୍ଟ ୬୧୯ ଅବ୍ଦରୁ § । ସମୁଦ୍ରଗୁପ୍ତ ରାଜତ୍ୱ କରୁଥିଲେ ଖ୍ରୀଷ୍ଟ ୩୨୦ରୁ ୩୮୦ ଅବ୍ଦ ପର୍ଯ୍ୟନ୍ତ । ସୁତରାଂ ସୋମଗୁପ୍ତ ବଂଶର ଇନ୍ଦ୍ରବଳ (ଭବଦେବ ରଣକେଶରୀ ଚନ୍ଦ୍ରାଦୁର୍ଗ) ପ୍ରୟାଗ ଶିଳାଲେଖରେ ମହେନ୍ଦ୍ର ନାମରେ ବର୍ଣ୍ଣିତ ହୋଇଛନ୍ତି । ସମୁଦ୍ରଗୁପ୍ତ ସୋମଗୁପ୍ତ ବଂଶକୁ କୋଶଳରୁ ତଡ଼ିଦେଇ ନ ଥିଲେ ଏବଂ ସେମାନେ କୋଶଳରେ ରାଜତ୍ୱ କରୁଥିଲେ ହ୍ୱାଂତ୍ସାଂଙ୍କ କୋଶଳ ଆଗମନ

ବିଖ୍ୟାତ ଥିଲା, କାରଣ ଆଧୁନିକ ଶ୍ରୀପୁର ଗ୍ରାମ, ଲକ୍ଷ୍ମଣ ଦେଉଳ ଓ ଶିଳାଲିପିରୁ ବୁଝାପଡ଼େ ଯେ ସୋମଗୁପ୍ତ ବଂଶର ବହୁ ପୂର୍ବେ ନିଶ୍ଚୟ ସେଠାରେ ପ୍ରାଚୀନତର ଶ୍ରୀପୁର ପୋତିହୋଇ ପଡ଼ିଥିବ ।

ଶ୍ରୀପୁର ନଗରର ଏହି ପ୍ରାଚୀନ ପ୍ରଶସ୍ତିରୁ ଏହା ନିଶ୍ଚିତ ରୂପେ ଅବଧାରଣ କରାଯାଇ ପାରିବ ଯେ ପ୍ରୟାଗ ସ୍ତମ୍ଭୋଲ୍ଲିଖିତ "କୌଶଲ୍ଲକ ମହେନ୍ଦ୍ର" ଏହି ଶ୍ରୀପୁରର ରାଜା ଥିଲେ ।

ପ୍ରାଚୀନ କୋଶଳର ପ୍ରାପ୍ତି ଓ ଉଚ୍ଚକୋଟୀର ସଭ୍ୟତା ଓ ସଂସ୍କୃତି ଆଦିର ଜଣାପଡ଼େ ବର୍ତ୍ତମାନ ସମ୍ବଲପୁର-ଛତିଶଗଡ଼ ଅଞ୍ଚଳରେ ଥିବା ନାନା ପ୍ରକାର ଅବଶେଷରୁ, ଉଦାହରଣତଃ କହାଯାଇ ପାରିବ ରାମଗଡ଼ର ଦନ୍ତାଗୁମ୍ଫା ସୀତାବେଙ୍ଗଲ ଓ ଯୋଗୀମଡ଼ାର ଶିଳାଲିପି ଓ ଚେଳସବ୍ରୁ (ବିସ୍ତୃତ ବିବରଣ ସଜାଗେ ମତ୍ପ୍ରଣୀତ "ସମ୍ବଲପୁର ଇତିହାସ" ଦ୍ରଷ୍ଟବ୍ୟ) ।

§ A S. R. J., Vol. XII. 87.


ଭାରତବର୍ଷ
୬୨୯–୬୪୨
କପିଶା
୧
ଟକ
କାଶ୍ମୀର
୨
ସିନ୍ଧୁ
ସ୍ଥାନେଶ୍ୱର
ବିରାଟ
ଅହିଚ୍ଛତ୍ର
ମଥୁରା
ନେପାଳ
ଶ୍ରାବସ୍ତି
ବୃଜି
ଉଜ୍ଜୟିନୀ ୩
ବୈଶାଳୀ
କାମରୂପ
ମଗଧ
ବଦରି
ମାଳବ
ଧାର
୫ ପୁଣ୍ଡ୍ର
କର୍ଣ୍ଣସୁବର୍ଣ୍ଣ
ସମତଟ
ବଲ୍ଲଭୀ
ନାସିକ
କୋଶଳ
ଉତ୍କଳ
ତାମ୍ରଲିପ୍ତ
ମହାରାଷ୍ଟ୍ର
କଙ୍ଗୋଦ
କଳିଙ୍ଗ
ଗଞ୍ଜାମ
୪
ଆନ୍ଧ୍ର
କଙ୍କଣ
ଧାନ୍ୟକଟକ
ଦ୍ରାବିଡ଼
କାଞ୍ଚୀପୁର
ମାଲକୂଟ
ସିଂହଳ
୧ ଉତ୍ତର ଦେଶ
୨ ପଶ୍ଚିମ ଦେଶ
୩ ମଧ୍ୟ ଦେଶ
୪ ଦକ୍ଷିଣ ଦେଶ
୫ ପୂର୍ବ ଦେଶ

ପର୍ଯ୍ୟନ୍ତ । ପୂର୍ବବର୍ଣ୍ଣିତ ଯୁକ୍ତି ସମୂହର ଭିତ୍ତି ଉପରେ କହାଯିବ ଯେ ସୋମବଂଶ ପ୍ରମାନେ ଯାଦବ ଶାଖାର ବଂଶର ଏକ ଶାଖା ଥିଲେ । ସୋମଗୁପ୍ତମାନଙ୍କର ଅନ୍ୟ ଏକ ଶାଖା ଗୌଡ଼ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ * ।

ବାକାଟକ ବଂଶର ଦ୍ୱିତୀୟ ପୃଥ୍ୱୀସେନଙ୍କ ବାଲାଘାଟ ତାମ୍ର-ଶାସନରୁ ଜଣାଯାଏ ଯେ ଦ୍ୱିତୀୟ ପ୍ରବରସେନଙ୍କ ପୁତ୍ର ନରେନ୍ଦ୍ରସେନ କୋଶଳ, ମେକଳ ଓ ମାଳବର ଅଧିପତି ଥିଲେ । ସୁତରାଂ ୪୬୭ ଖ୍ରୀଷ୍ଟାବ୍ଦରେ କୋଶଳ ବାକାଟକର ସାମନ୍ତ ରାଜ୍ୟ ଥିଲା । ସେହି ବଂଶର ଅଜନ୍ତା ଶିଳାଲେଖରୁ ଜଣାଯାଏ ଯେ ହରିସେନ ବାକାଟକ (ଖ୍ରୀଷ୍ଟାବ୍ଦ ୫୦୦-୫୧୫) କୁନ୍ତଳ, ଅବନ୍ତୀ, କଳିଙ୍ଗ, କୋଶଳ, ତ୍ରିକୂଟ, ଲାଟ ଓ ଆନ୍ଧ୍ରର ଅଧିପତି ଥିଲେ ।

ରାଇପୁର ଜିଲ୍ଲାରେ ଅବସ୍ଥିତ ମହାନଦୀକୂଳର ଶ୍ରୀପୁରରୁ ଆବିଷ୍କୃତ ତିବରଦେବଙ୍କ ତାମ୍ରଶାସନରୁ ଜଣାଯାଏ ଯେ ତିବରଦେବ "ସମସ୍ତ କୋଶଳାଧିପତି" ଥିଲେ † । ତିବରଦେବ ପାଣ୍ଡୁ-(ସୋମଗୁପ୍ତ) ବଂଶୀୟ ନନ୍ନଦେବଙ୍କ ପୁତ୍ର ଓ ଇନ୍ଦ୍ରବଳଙ୍କ ପୌତ୍ର ।

* ମାରଞ୍ଜମୁରା ତାମ୍ରଶାସନ—ମହାରାଜ ମହାଶିବଗୁପ୍ତ—
J.B.O.R.S. 1916—B.C. Mazumdar.

† Mahakosala Historical Society's Papers—
Vol. II.

କୁହିଳାଗଡ଼ରେ ଖୋଦିତ ସେହି ତାମ୍ରଶାସନରୁ ଜଣାଯାଏ ଯେ ଜନମେଜୟ ଖ୍ରୀଷ୍ଟ ଷଷ୍ଠ-ସପ୍ତମ ଶତକରେ ‡ ରାଜା ଥିଲେ ।

ପାଣ୍ଡୁବଂଶୀୟ କୋଶଳାଧିପତି ଶ୍ରୀହର୍ଷଦେବଙ୍କ କନ୍ୟା ରାଜ୍ୟମତୀଙ୍କୁ ବିବାହ କରିଥିଲେ ନେପାଳର ରାଜା ଜୟଦେବ § । ଜୟଦେବଙ୍କ ନେପାଳ ଶିଳାଲିପିରୁ ଜଣାଯାଏ ଯେ ଶ୍ରୀହର୍ଷଦେବ ଗୌଡ଼, ଓଡ୍ର ଓ କଳିଙ୍ଗର ରାଜାଧିରାଜ ଥିଲେ । ଶ୍ରୀହର୍ଷଦେବ ମଗଧର ଗୁପ୍ତବଂଶର ରାଜା ଶ୍ରୀ ସୂର୍ଯ୍ୟବର୍ମାଙ୍କ କନ୍ୟା ବାସଟାଙ୍କୁ ବିବାହ କରିଥିଲେ ¶ । ସୂର୍ଯ୍ୟବର୍ମାଙ୍କ ପୁତ୍ର ଭାସ୍କରବର୍ମା ବାଳାର୍ଜୁନଙ୍କ ମାତୁଳ ଥିଲେ || । ଶ୍ରୀହର୍ଷଗୁପ୍ତଦେବଙ୍କ ପୁତ୍ର ରଣକେଶରୀ ଗୌଡ଼ର କୁମାରାମାତ୍ୟ ରୂପେ ନିଯୁକ୍ତ ହୋଇଥିଲେ ।

‡ ତିବରଦେବଙ୍କ ରାଜିମ ତାମ୍ରଶାସନ, ବଲ୍ଲେଦା ତାମ୍ରଶାସନ ଓ ଶ୍ରୀପୁର ତାମ୍ରଶାସନ—
Mahakosala Historical Society's Papers, Vol. II.

§ Nepal Inscription of Joyadeva of Harsa Era 153 or 759 A.D.

¶ ଶ୍ରୀପୁରର ଲକ୍ଷ୍ମଣଦେଉଳ ଶିଳାଲେଖ—
Mahakosala Historical Society's Papers Vol. II.

|| ବାଳାର୍ଜୁନଙ୍କ ବଲସପୁର ଜିଲ୍ଲା ଅନ୍ତଃପାତୀ ମଲ୍ଲାର ତାମ୍ରଶାସନ—
Mahakosala Historical Society's Papers, Vol. II.

ଏହି ସୁବିଖ୍ୟାତ ପାଣ୍ଡୁବଂଶର ବା ସୋମଗୁପ୍ତ ବଂଶର ଅସଂଖ୍ୟ ଶିଳାଲେଖ ଓ ତାମ୍ରଶାସନ ଆବିଷ୍କୃତ ହୋଇଅଛି । ସେମାନଙ୍କର ଉପାଦାନରୁ ଏହି ବଂଶର ନିମ୍ନଲିଖିତ ବଂଶଲତା ସଂଗୃହୀତ ହୋଇଅଛି :—

## 'ସୋମଗୁପ୍ତ ରାଜବଂଶାବଳୀ'

୧—ନାଗବଳ

|

୨—ବପ୍ପରାଜ

|

୩—ଜହ୍ନୁବଳ

୪—ଭରତ (ପ୍ରଥମ ଇନ୍ଦ୍ରବଳ)

|

୫—ଉଦୟନ

|

୬—ଦ୍ୱିତୀୟ ଇନ୍ଦ୍ରବଳ (ଭବଦେବ ରଣକେଶରୀ ଚନ୍ଦ୍ରାଦୁର୍ଗ)

|

୭—ନନ୍ନଦେବ (ଈଶାନଦେବ)

|

୮—ଚନ୍ଦ୍ରଗୁପ୍ତ ତିବରଦେବ ମହାଶିବଗୁପ୍ତ (୫୮୫-୫୯୦)

|

୯—ହର୍ଷଗୁପ୍ତ (୫୯୦-୬୧୫) (ଭାର୍ଯ୍ୟା ମଗଧର ସୂର୍ଯ୍ୟବର୍ମାଙ୍କ କନ୍ୟା ବାସଟା)

କନ୍ୟା (ବିଷ୍ଣୁକୁଣ୍ଡୀ ଆନ୍ଧ୍ର ରାଜା ମାଧବବର୍ମାଙ୍କ ଭାର୍ଯ୍ୟା)

୯—ହର୍ଷଗୁପ୍ତ (୫୯୦-୬୯୫),

୧୦—ବାଳାର୍ଜୁନ ମହାଶିବଗୁପ୍ତ (୬୯୫-୭୫୦)

ରଣକେଶରୀ

ରାଜ୍ୟମତୀ (ନେପାଳର ରାଜା ଜୟଦେବଙ୍କ ଭାର୍ଯ୍ୟା)

୧୧—ଜନମେଜୟ ମହାଭବଗୁପ୍ତ (ଉତ୍କଳ-ତ୍ରିକଳିଙ୍ଗ କୋଶଳାଧିପତି ବଂଶ)

୧୨—ଯଯାତି ମହାଶିବଗୁପ୍ତ

ବିଚିତ୍ରବୀର୍ଯ୍ୟ

୧୩—ଭୀମରଥ ମହାଭବଗୁପ୍ତ

ଅଭିମନ୍ୟୁ

୧୪—ଧର୍ମରଥ ମହାଶିବଗୁପ୍ତ

୧୫—ନଘୁଷ ମହାଭବଗୁପ୍ତ

୧୬—ଶବରଦେବ

ନଘୁଷ

୧୭—ଚଣ୍ଡୀହର ଯଯାତି ମହାଶିବଗୁପ୍ତ

୧୮—ଉଦ୍ୟୋତକେଶରୀ ମହାଭବଗୁପ୍ତ

ଅଭିମନ୍ୟୁ

୧୯—ଲଲାଟେନ୍ଦୁକେଶରୀ ମହାଶିବଗୁପ୍ତ

ସୋମେଶ୍ୱର ଇନ୍ଦ୍ରରଥ

ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ଅଭିଯାନବେଳେ ବିଶାଳ କଳିଙ୍ଗ ରାଜ୍ୟ ବିଭକ୍ତ ହୋଇଥିଲା ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ । ଋଷିକୁଲ୍ୟା ଓ ମହାନଦୀ ମଧ୍ୟରେ ଶୈଳୋଦ୍ଭବ ବଂଶର କଙ୍ଗୋଧ ବା କଙ୍ଗୋଦ ରାଜ୍ୟ ଥିଲା । ଶୈଳୋଦ୍ଭବ ବଂଶର ମଧ୍ୟମରାଜ ଯୁଦ୍ଧରେ ସୋମଗୁପ୍ତ ବଂଶର ନରେନ୍ଦ୍ରଙ୍କୁ ଜିଣିଥିଲେ । ଇନ୍ଦ୍ରଦେବ ଶୈଳୋଦ୍ଭବ ବଂଶର ଧର୍ମରାଜଙ୍କ ସମୟରେ ତାଙ୍କ ଭାଇ ମାଧବ-ରାଜଙ୍କୁ ସାହାଯ୍ୟ କଲେ । କିନ୍ତୁ ମାଧବରାଜ ଓ ଇନ୍ଦ୍ରଦେବ ଯୁଦ୍ଧରେ ପରାସ୍ତ ହେଲେ ।

କାଳମଧ୍ୟରେ ଯାଜପୁରର ଭୌମକର ବଂଶ ଶକ୍ତିକୁ ଅଗ୍ରସର କରାଇ ଶୈଳୋଦ୍ଭବ ବଂଶର ଉଚ୍ଛେଦ ସାଧନ କଲେ ଏବଂ ସେମାନଙ୍କ ହାତରୁ କଙ୍ଗୋଦ ଛଡ଼ାଇନେଲେ ।

ଶ୍ରୀହର୍ଷଗୁପ୍ତଙ୍କ ପୁତ୍ର ବାଳାର୍ଜୁନ ମହାଶିବଗୁପ୍ତ ନେତୃତ୍ୱରେ ରାଜବଂଶ ଦ୍ୱାରା ଶ୍ରୀପୁରରୁ ବିତାଡ଼ିତ ହୋଇଥିଲେ । ଶ୍ରୀପୁରରୁ ବିତାଡ଼ିତ ହୋଇ ସୋମଗୁପ୍ତ ବଂଶ ଦକ୍ଷିଣ ଆସିଥିଲେ ପୂର୍ବ କୋଶଳ ଅଞ୍ଚଳକୁ ଏବଂ ରାଜଧାନୀ ସ୍ଥାପନ କରିଥିଲେ ସୋନପୁର ସୀମା ମଧ୍ୟରେ ଥିବା ବିନୀତା (ବିନୀତପୁର) ଓ ସୁବର୍ଣ୍ଣପୁରରେ ।

ସମ୍ଭବତଃ ସୋମଗୁପ୍ତବଂଶ ପ୍ରଥମ ପାଞ୍ଚ ଜଣ ରାଜା ମଗଧର ଗୁପ୍ତସମ୍ରାଟ ବଂଶର କିମ୍ବା ବେରାରର ବାକାଟକ ବଂଶର ସାମନ୍ତରାଜା ଥିଲେ । ଡବରଦେବ ପ୍ରଥମେ ଘୋଷଣା କରନ୍ତି ନିଜକୁ "ସକଳ

କୋଶଳାଧିପତେ” ବୋଲି । ତାଙ୍କ ଅମଳରୁ ସମ୍ଭବତଃ ଏହି ବଂଶର ସ୍ୱାଧୀନ ରାଜତ୍ୱ ଆରମ୍ଭ ହୁଏ * ।

ଭବଦେବଙ୍କ ପୁତ୍ର ହର୍ଷଦେବ ଜଣେ ଅତି ପ୍ରସିଦ୍ଧ ଯୋଦ୍ଧା ଥିଲେ । ପିତାଙ୍କ ଅମଳରେ ଯେ ସେନାପତି ରୂପେ ରାଜାମାନଙ୍କୁ ଜିଣି ସୋମଗୁପ୍ତ ରାଜ୍ୟ ବଢ଼ାଇଥିଲେ ଏବଂ ନିଜ ଅଭିଷେକବେଳେ ଗୌଡ଼, ଓଡ୍ର ଓ କଳିଙ୍ଗ ତାଙ୍କର ସାମନ୍ତ ରାଜ୍ୟ ଥିଲା । ହର୍ଷଗୁପ୍ତ ଦେବଙ୍କ ଭଗିନୀଙ୍କୁ ବିବାହ କରିଥିଲେ ଆନ୍ଧ୍ରର ବିଷ୍ଣୁକୁଣ୍ଡୀବଂଶୀୟ ରାଜା ମାଧବବର୍ମା । କଳିଙ୍ଗର ପୂର୍ବ ଗଙ୍ଗବଂଶ ଓ ବିଷ୍ଣୁକୁଣ୍ଡୀ ବଂଶ ମଧ୍ୟରେ ଅନୁକୂଳ ସମ୍ପର୍କ ଥିଲା । ସୋମଗୁପ୍ତବଂଶ ଓ ବିଷ୍ଣୁକୁଣ୍ଡୀ ବଂଶ ମିଶି ଉଚ୍ଛେଦ ସାଧନ କଲେ ସେହି ଗଙ୍ଗ ବଂଶର ଏବଂ କଳିଙ୍ଗ ହୋଇଲେ ସାମ୍ରାଜ୍ୟର ଅନ୍ତର୍ଗତ ହେଲା । ସୋମଗୁପ୍ତବଂଶ “ତ୍ରିକଳିଙ୍ଗାଧିପତି” ହେଲେ, କାରଣ କଳିଙ୍ଗ, ଓଡ୍ର ଓ ଗୌଡ଼ (ବଙ୍ଗଳା) ସେମାନଙ୍କ ରାଜ୍ୟ ମଧ୍ୟରେ ରହିଲା ।

ସୋମଗୁପ୍ତ ବଂଶର ଷଷ୍ଠ ରାଜା ଦ୍ୱିତୀୟ ଇନ୍ଦ୍ରବଳ ଭବଦେବ ରଣକେଶରୀ ଚନ୍ଦ୍ରାଦୁର୍ଗ ସମ୍ଭବତଃ ଶରଭପୁର ରାଜବଂଶ ସଙ୍ଗେ ସମସ୍ତ କୋଶଳର ଆଧିପତ୍ୟ ନିମନ୍ତେ ବାରମ୍ବାର ଯୁଦ୍ଧରେ ନିରତ ଥିଲେ । ପ୍ରଥମେ ସୋମଗୁପ୍ତମାନେ ହାରିଥିଲେ, କିନ୍ତୁ

* ଭବଦେବଙ୍କ ରାଜିମ ତାମ୍ରଶାସନ, ବଲୋଦା ତାମ୍ରଶାସନ ଓ ଶିରପୁର ତାମ୍ରଶାସନ — **Mahakosala Historical Society's Papers—Vol. II.**

ଅଳ୍ପଦିନ ମଧ୍ୟରେ ଶରଭପୁର ରାଜବଂଶ ସୋମଗୁପ୍ତମାନଙ୍କଠାରୁ ସେମାନଙ୍କ ରାଜଧାନୀ ଶ୍ରୀପୁର ଆକ୍ରମଣ କରି ନେଇଥିଲେ । ସୋମଗୁପ୍ତ ବଂଶ ହଟିଯାଇଥିଲେ କୋଶଳର ପୂର୍ବ ପ୍ରାନ୍ତକୁ ।

ପୂର୍ବ ଗଙ୍ଗବଂଶର ଉଚ୍ଛେଦ ପରେ କଳିଙ୍ଗରେ ଉଦୟ ହୋଇଥିଲା ଶୈଳୋଦ୍ଭବ ବଂଶର । ଶୈଳୋଦ୍ଭବ ବଂଶର ମଧ୍ୟମରାଜ ଯଶୋଭୀତଙ୍କ କନିଷ୍ଠ ପୁତ୍ର ଦ୍ୱିତୀୟ ମାଧବରାଜ ଜ୍ୟେଷ୍ଠ ଧର୍ମରାଜ ମାନଭୀତଙ୍କ ସଙ୍ଗେ କଳିଙ୍ଗ ସିଂହାସନ ନିମନ୍ତେ ବିବାଦ କରିଥିଲେ ।

ସେତେବେଳେ କଳିଙ୍ଗରାଜ୍ୟ ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇଥିଲା । ପୂର୍ବ ଗୋଦାବରୀ ଜିଲ୍ଲାର ପିଠାପୁରରେ ରାଜତ୍ୱ କରୁଥିଲେ 'ମାଠରବଂଶ' । ବିଶାଖାପାଟଣା ଜିଲ୍ଲାର ହେଗମାରତାମର ଥିଲା 'ବୈବରିଷ୍ଟ' । ସେଠାରେ ରାଜତ୍ୱ କରୁଥିଲେ 'ବାଶିଷ୍ଠ' ବଂଶ । ଶିକାକୋଲଠାରେ ଥିଲା 'ବରଣ୍ଡପାଟ' ରାଜ୍ୟ ଏବଂ ଗଞ୍ଜାମ-ଜିଲ୍ଲାର ଚିକାଠୁରଠାରେ ଥିଲା 'ଗିରିକୋଟ୍ଟର' ରାଜ୍ୟ । ଋଷିକୁଲ୍ୟା ଓ ମହାନଦୀ ମଧ୍ୟରେ 'କଙ୍ଗୋଦ' ବା 'କଙ୍ଗୋଦ' ରାଜ୍ୟ ଥିଲା । ସେଠାରେ ଶୈଳୋଦ୍ଭବ ବଂଶ ରାଜତ୍ୱ କରୁଥିଲେ । କଳିଙ୍ଗନଗର ବା ଆଧୁନିକ ମୁଖଲିଙ୍ଗଠାରେ ରାଜତ୍ୱ କରୁଥିଲେ ପୂର୍ବ ଗଙ୍ଗବଂଶ, ସେଇମାନେ ହର୍ଷଗୁପ୍ତଦେବଙ୍କ ବିଜୟ ଫଳରେ କଳିଙ୍ଗ ଆଧିପତ୍ୟ ହରାଇ ଏକ ସାମାନ୍ୟ ରାଜବଂଶରେ ପରିଣତ ହୋଇଥିଲେ । ଯାଜପୁରଠାରେ ଭୌମକର ଏବଂ ମେଦିନୀପୁର-ମୟୂରଭଞ୍ଜ-ସିଂହଭୂମି ଖଣ୍ଡରେ ଶୁଳ୍କୀ ବଂଶ ରାଜତ୍ୱ କରୁଥିଲେ ।

ଶୈଳୋଦ୍ଭବ ବଂଶରେ ସପ୍ତମ ରାଜା ମଧ୍ୟମରାଜ ଯଶୋଭୀତ ଅଶ୍ୱମେଧ ଓ ବାଜପେୟ ଯଜ୍ଞ କରିଥିଲେ । ସେ ସୋମଗୁପ୍ତ ବଂଶର ନନ୍ଦୋଦ୍ଭବଙ୍କୁ ପରାସ୍ତ କରିଥିଲେ । ତାଙ୍କର ପ୍ରତିଶୋଧ ନେଲେ ତିବରଦେବ । ସେ ମାଧବରାଜଙ୍କୁ ପରାଜୟ କଲେ । ମାଧବରାଜ (୬୧୯-୨୦) କଳିଙ୍ଗ ପାଇଁ ସିଂହାସନ ମାଡ଼ିବସିଲେ । ଧର୍ମରାଜ ପୁଣି ତାଙ୍କୁ ତଡ଼ି ନେଲେ କଳିଙ୍ଗ ତାହାଣ ହାଙ୍କାର ଫାସିକ ବା ଫାସିକା ପର୍ଯ୍ୟନ୍ତ । ସେଠାରେ ମାଧବରାଜ ଓ ତିବରଦେବଙ୍କ ସୈନ୍ୟ ପରାସ୍ତ ହେବାରୁ ମାଧବରାଜ ଖଡ୍ୟାହବାକୁ ପଳାୟନ କଲେ । ଏହି ଶତାବ୍ଦୀ ଫଳରେ କଙ୍ଗୋଦ ଓ କୋଶଳ ମଧ୍ୟରେ ଲାଗିଲା ଯୁଦ୍ଧ । ଶେଷରେ ଶ୍ରୀହର୍ଷଦେବ ଜିଣିଲେ ଏବଂ "ତ୍ରିକଳିଙ୍ଗାଧିପତି" ହେଲେ । ସେ ଓ କାମ୍ପୁ କୁଣ୍ଡୀ ରାଜା ମିଳି ପୂର୍ବ ଗଙ୍ଗବଂଶକୁ ପରାସ୍ତ କଲେ । ଫଳରେ କଳିଙ୍ଗ କୋଶଳର ସାମନ୍ତରାଜ୍ୟ ହେଲା * ।

ଏହା ପୂର୍ବରୁ ସୋମବଂଶ କାନ୍ତାରକ ଅଧିକାର କରିସାରିଥିଲେ ।

* "ମାଦ୍ୟଦନ୍ତିସମୂହଦନ୍ତମୁଷଳଧ୍ୱସ୍ତାରିଭୂଭୃଚ୍ଛିରେ
ଗୌଡ଼ୌଡ୍ରାଦିକଳିଙ୍ଗକୋଶଳପତିଶ୍ରୀହର୍ଷଦେବାତ୍ମଜା ।
ଦେବୀରାଜ୍ୟମତୀକୁଳୋଚିତଗୁଣୈର୍ଯୁକ୍ତା ପ୍ରଭୂତା କୁଳୈଃ
ଯେନୋଢ଼ା ଭଗଦତ୍ତରାଜକୁଳଜା ଲକ୍ଷ୍ମୀରିବ କ୍ଷ୍ମାଭୃଜା ।୧୫।"
—Nepal Inscription of Joyadeva of Harsa Era 153.
(Indian Antiquary. P. 181)

ଉତ୍ତରେଶ୍ୱର ଦେଶର ପରାକ୍ରାନ୍ତ ରାଜା ଶତ୍ରୁକୁଣ୍ଡୀ ମାଧବବର୍ମାଙ୍କ ସମକାଳୀନ ଥିଲେ † । ଜଣାଯାଏ ଯେ ସେ କାନ୍ୟକୁବ୍ଜ, ଶରଭପୁର, କଳିଙ୍ଗ, ଓଡ୍ର (କଟକ, ପୁରୀ, ଗଞ୍ଜାମ) ଏବଂ ଗୌଡ଼ § ଜୟ କରିଥିଲେ ।

ସୋମଗୁପ୍ତ ବଂଶର ଏକ ରାଜପୁତ୍ର ପ୍ରତିଷ୍ଠିତ ହୋଇଥିଲେ ଗୌଡ଼ (ବଙ୍ଗଳା)ର ସିଂହାସନରେ । ସେ ଗୌଡ଼ ଓ ରାଢ଼ ଶାସନ କରୁଥିଲେ । ଶ୍ରୀମତ୍ ଯଯାତି ସେକଥା ନିମ୍ନ ଶ୍ଲୋକରେ ଉଲ୍ଲେଖ କରିଛନ୍ତି :—

ଅସ୍ମଦ୍‌ବଂଶାନ୍ୱୟେ କାଲେ ଯଃ କଶ୍ଚିତ୍ ନୃପତିର୍ଭବେତ୍ ।
ତସ୍ୟାହଂ ପାଦଲଗ୍ନୋଽସ୍ମି ଯଯାତି × × ।

ବଙ୍ଗଳ ଶତ୍ରୁମାନଙ୍କ ଦ୍ୱାରା ଆକ୍ରାନ୍ତ ହେବା ଦେଖିଲେ ଯଯାତି ନିଜଠାରୁ ସସୈନ୍ୟ ଯାତ୍ରା କରି ସ୍ୱଗୋତ୍ରୀମାନଙ୍କୁ ଶତ୍ରୁ କବଳରୁ ରକ୍ଷା କରୁଥିଲେ || ।

† Thakurdiya Plates of Mahapravara Raj —Epigraphia Indica, Vol. XXII, Part I, P. 15—V.V. Mirashi.

§ Nepal Inscription of Joyadeva.

|| —"The Maranja-mura charter of Yajati Mahasiva-Gupta (edited by me in the J.B.O.R.S. 1916) discloses the startling fact that one branch of the family of these Kosal Guptas ruled somewhere in Bengal

ପର ପୃଷ୍ଠା ଦେଖ

ହ୍ୱାଂ ତ୍ସାଂ କଳିଙ୍ଗରୁ ଉତ୍ତର-ପଶ୍ଚିମ ମୁଖରେ ଯାଇ କୋଶଳରେ ପହଞ୍ଚିଥିଲେ । ସୁତରାଂ କୋଶଳର ଅବସ୍ଥିତି ଥିଲା ଆଧୁନିକ ଗଞ୍ଜାମ ଜିଲ୍ଲାର ଠିକ୍ ଉତ୍ତର-ପଶ୍ଚିମ କୋଣକୁ । ଅର୍ଥାତ୍ ଆଧୁନିକ ବୌଦ୍ଧ, ପାଟଣା, କଳାହାଣ୍ଡି, ସମ୍ବଲପୁର, ସୁନ୍ଦରଗଡ଼, ସୁରଗୁଜା, ରାୟପୁର, ବିଳାସପୁର ପ୍ରଭୃତି ଜିଲ୍ଲାମାନ ଘେନି କୋଶଳ ଗଠିତ ହୋଇଥିଲା । ତାହାର ଦକ୍ଷିଣ ସୀମା ଗୋଦାବରୀ ଓ ଇନ୍ଦ୍ରାବତୀ ନଦୀ ନିକଟରେ ରହିଥିଲା । ହ୍ୱାଂ ତ୍ସାଂ କହନ୍ତି ଯେ କୋଶଳର ରାଜା କ୍ଷତ୍ରିୟ ଓ ଶିଳ୍ପ-ସାହିତ୍ୟ-ପ୍ରେମିକ ଥିଲେ * ।

ରାୟପୁର ଜିଲ୍ଲାର ରାଜଧାନୀ ରାୟପୁର ସହରରୁ ପ୍ରାୟ ୪୦ ମାଇଲ ଉତ୍ତରପୂର୍ବ ଦୂରତାରେ ମହାନଦୀ କୂଳରେ ଅବସ୍ଥିତ ଶ୍ରୀପୁର ନଗର ପ୍ରାଚୀନ କୋଶଳର ରାଜଧାନୀ ଥିଲା । ସେଠାରେ ସୋମଗୁପ୍ତ ବଂଶର ପ୍ରାଚୀନତମ ଶିଳାଲିପି ଓ ତାମ୍ରଶାସନ ମିଳୁଛି ।

during these days. The manner in which this fact has been mentioned in the charter induces me to believe that the Bengal-line of Kosal Guptas was established long before the time of Yajati and Janamejoy, × × ×.,, (Typical Selections from Oriya Literature, Vol. 1 —Introduction, P. XVI— B.C. Mazumdar.
—Published by the Calcutta University)

* Colonel L. A. Waddel.

ହ୍ୱାଂ ତ୍ସାଂ ବୋଧହୁଏ ଏହି ସହରକୁ ଯାଇ ନ ଥିଲେ, କାରଣ ସେ ଶ୍ରୀପୁରର ଉଲ୍ଲେଖ କରିନାହାନ୍ତି । ତାଙ୍କ ଚକ୍ଷୁରେ ବଡ଼ ନ ଥିଲା ରାଜଧାନୀ, ବଡ଼ ଥିଲା ବୌଦ୍ଧପୀଠ । ଏହି ଶ୍ରୀପୁରରେ ପାଣ୍ଡବ ସୋମବଂଶୀ ରାଜାମାନେ ରାଜତ୍ୱ କରୁଥିଲେ । ସାର୍ ଏ. କନିଂହାମ କହନ୍ତି ଯେ ସୋମଗୁପ୍ତମାନେ ଶ୍ରୀପୁରରେ ରାଜତ୍ୱ କରୁଥିଲେ ଖ୍ରୀଷ୍ଟ ୩୧୯ ଅବ୍ଦରୁ † । ସମୁଦ୍ରଗୁପ୍ତ ରାଜତ୍ୱ କରିଥିଲେ ଖ୍ରୀଷ୍ଟ ୩୨୦ରୁ ୩୮୦ ପର୍ଯ୍ୟନ୍ତ । ସୁତରାଂ ଧ୍ରୁବସ୍ୱାମିନୀଙ୍କ ଲିଖିତ ମତେ ସୋମଗୁପ୍ତ ବଂଶ ବ୍ୟତୀତ ଅନ୍ୟ କୌଣସି ବଂଶର ରାଜା ହୋଇଥିବା ସମ୍ଭବ ନୁହେଁ । ଏହି ବଂଶ ସେଠାରେ ହ୍ୱାଂ ତ୍ସାଂଙ୍କ ଭ୍ରମଣ କାଳରେ ମଧ୍ୟ ରାଜତ୍ୱ କରୁଥିଲେ ।

ଭାରତରେ ସୂର୍ଯ୍ୟ ଓ ସୋମ ଦୁଇଟିମାତ୍ର କ୍ଷତ୍ରିୟକୁଳ ଥିଲେ । ସୋମକୁଳ ଥିଲେ ସଂଖ୍ୟାଗରିଷ୍ଠ ଓ ବହୁ ଶାଖାରେ ବିଭକ୍ତ । ବେରାରର ବାକାଟକ ବଂଶ, ମହାରାଷ୍ଟ୍ରର ରାଷ୍ଟ୍ରକୂଟ ବଂଶ, ଅସୁରର ମାଧ୍ୟଳ ବଂଶ, ଚନ୍ଦ୍ରପୁରର ଚେଦି ବଂଶ, ତ୍ରିପୁରୀର ହୈହୟ ବଂଶ, ତଥା ଶ୍ରୀପୁରର ସୋମଗୁପ୍ତ ବଂଶ ସମସ୍ତେ ବୈଦିକ ଯୁଗର ଖ୍ୟାତ ଯାଦବ ବଂଶର ବା ସୋମକୁଳର ବିଭିନ୍ନ ଶାଖା ଥିଲେ । ଯାଦବ ବଂଶର ସଂଖ୍ୟାବହୁଳତା ଭାଗବତ ପୁରାଣରେ ପ୍ରସିଦ୍ଧ । ସୋମଗୁପ୍ତ ବଂଶର ଏକ ଶାଖା ଗୌଡ଼ ଅଧିକାର କରିଥିଲେ ଏବଂ ସେଠାରେ କୋଶଳର ଏକ ସାମନ୍ତ ଉପନିବେଶ

† A. S. R. J., Vol. XII. P. 87.

ସ୍ଥାପନ କରିଥିଲେ * । ଏଣୁ ଗୌଡ଼ର ଶାସନକର୍ତ୍ତା ଶଶାଙ୍କ ନରେନ୍ଦ୍ର ଗୁପ୍ତ (ହର୍ଷବର୍ଦ୍ଧନଙ୍କ ସମସାମୟିକ) ସୋମଗୁପ୍ତବଂଶୀୟ ଥିଲେ । ‡

ଶଶାଙ୍କ ବା ନରେନ୍ଦ୍ର ଗୁପ୍ତ ଜଣେ ମହାସାମନ୍ତ ଥିଲେ § । କଳିଙ୍ଗର ଶୈଳୋଦ୍ଭବ ମାଧବରାଜ ଏକ ତାମ୍ରଶାସନରେ ନିଜକୁ ଶଶାଙ୍କଙ୍କ ସାମନ୍ତରାଜା ବୋଲି ବର୍ଣ୍ଣନା କରିଛନ୍ତି † । ଐତିହାସିକ ରାଖାଲଦାସ ବାନାର୍ଜୀ କହନ୍ତି, "In this period it is not possible to think of any other Sasanka than of the much abused Sasanka, king of Gouda" ¶ । ସୁତରାଂ ହର୍ଷବର୍ଦ୍ଧନଙ୍କ ସମକାଳୀନ ଗୌଡ଼ର ଶଶାଙ୍କ ବ୍ୟତୀତ କେହି ଅନ୍ୟ ଶଶାଙ୍କ

* Maranjamura Copperplate Grant of Yajati Mahasiva Gupta—J. B. O. R. S., 1916—B. C. Mazumdar.

‡ ସମ୍ଭବତଃ ହର୍ଷଗୁପ୍ତଙ୍କ ପୁତ୍ର ରଣକେଶରୀଙ୍କ ଠିକ୍ ନାମ "ନରେନ୍ଦ୍ରଗୁପ୍ତ" (ଶଶାଙ୍କ) ଥିବ ?

§ Gupta Inscriptions—Fleet, P. 284.

† Banpur Plates of Madhyama Raj—Kalinga Historical Research Society Journal, Vol. 2—No. 1, PP. 59—65.

¶ History of Orissa, Vol. I, P. 125—R. D. Banerji.

ନ ଥିଲେ । ପୂର୍ବୋକ୍ତ ବିଦ୍ୱାନଙ୍କ ସନ୍ଦେହର କାରଣ ଅନ୍ୟ ଜଣେ ବିଦ୍ୱାନଙ୍କ ନିମ୍ନୋକ୍ତ ଉକ୍ତିରୁ ଅବଧାରଣ କରି ହେବ :—

"Ancient records of Narendragupta (Sasanka) of Karnasuvarna in Bengal bear evidence of only Kongoda country (Puri and part of Ganjam) to have been subjugated by Narendragupta; Utkal or Ucha of Hieuen Tsang does not appear to have owned his rulership. It is only shortly after the time of Narendra-gupta that Hieuen Tsang speaks of a separate local ruler of the Utkal country. The question may be raised if in the first place it could be possible for Narendragupta to come upon Puri without traversing the districts of Balasore and Cuttack and if in the second place Narendragupta having his principal seat in Bengal could keep the Kongoda country under his rule when the Northern portion of Orissa was under the rule of another house of rulers"*

ବସ୍ତୁତଃ ପୂର୍ବୋକ୍ତ ବିଦ୍ୱାନ୍ ଦୁଇ ଜଣ ଗୌଡ଼ର ଶଶାଙ୍କଙ୍କ ବଂଶୋଦ୍ଭବର ସମ୍ୟକ୍ ଅନୁଶୀଳନ ନ କରି ଉଭୟେ ସନ୍ଦେହରେ।

* **Orissa in the Making—B. C. Mazumdar. PP. 99—100.**

ପଡ଼ୁଛନ୍ତି । ଗୌଡ଼ର ଶଶାଙ୍କ କୋଶଳର ସୋମଗୁପ୍ତ ବଂଶରେ ଏକ ରାଜପୁତ୍ର ଥିଲେ ଏବଂ ସେ ଗୌଡ଼ର ସ୍ୱାଧୀନ ରାଜା ନ ଥିଲେ । ସେ ସୋମଗୁପ୍ତ ବଂଶର ମହାସାମନ୍ତ ରୂପେ କର୍ଣ୍ଣସୁବର୍ଣ୍ଣ ଓ କଙ୍ଗୋଦ ଉଭୟ ଅଞ୍ଚଳ ଶାସନ କରୁଥିଲେ ।

ଏତେବେଳେ ଭାରତରେ ଏକ କୌତୂହଳପ୍ରଦ ଐତିହାସିକ ବ୍ୟାପାର ଘଟିଥିଲା । ଉତ୍ତରରେ ତଥା ଦକ୍ଷିଣରେ ସାମ୍ରାଜ୍ୟ ସ୍ଥାପନ ତଥା ଭାରତର ଏକୀକରଣ ନିମନ୍ତେ କେତେକ କ୍ଷୀଣ ପ୍ରୟାସ ଦେଖା ଦେଇଥିଲା । ସେହି ପ୍ରୟାସ ସଫଳ ବା ଅର୍ଦ୍ଧସଫଳ ହେଲା ହର୍ଷବର୍ଦ୍ଧନ ତଥା ପୁଲକେଶୀ ଚାଲୁକ୍ୟଙ୍କ ସମ୍ପ୍ରୟାସ ଯୋଗୁଁ । ପ୍ରତିଦ୍ୱନ୍ଦ୍ୱୀ ଶକ୍ତିମାନଙ୍କ ମଧ୍ୟରେ ଥାନେଶ୍ୱରର ବର୍ଦ୍ଧନବଂଶ, କନୌଜର ମୌଖାରି ବଂଶ, ମାଳବର ଦେବଗୁପ୍ତ, କୋଶଳର ସୋମଗୁପ୍ତ ବଂଶ ଏବଂ ବାତାପୀର ପୁଲକେଶୀଙ୍କ ଚାଲୁକ୍ୟ ବଂଶ ପ୍ରଧାନ ଥିଲେ । ସୋମଗୁପ୍ତ ବଂଶର ପ୍ରଧାନ ସେନାଧ୍ୟକ୍ଷ ଓ ରଣନାୟକ ଥିଲେ ଗୌଡ଼ର ମହାସାମନ୍ତ ନରେନ୍ଦ୍ରଗୁପ୍ତ ଶଶାଙ୍କ । ପ୍ରତିଦ୍ୱନ୍ଦ୍ୱୀ ଶକ୍ତିଗଣ ଏକାଧିକ ଶକ୍ତି ସମବାୟ ଗଠନ କରିଥିଲେ । ଦକ୍ଷିଣ ଶକ୍ତି ସମବାୟର ପ୍ରଧାନ ଥିଲେ ପୁଲକେଶୀ । ଉତ୍ତର ସମବାୟରେ ଥିଲେ ଦୁଇ ପ୍ରଧାନ ଦଳ । ପ୍ରଥମ ଥାନେଶ୍ୱର, କନୌଜ ଓ କାମରୂପ ଥିଲେ । ପ୍ରତିପକ୍ଷ ଦ୍ୱିତୀୟ ଦଳରେ ବା ମଧ୍ୟଦେଶ ସମବାୟରେ କୋଶଳ ଓ ମାଳବ ରହିଥିଲେ । ମାଳବର ଦେବଗୁପ୍ତ ନିହତ ହେବା ପରେ ନରେନ୍ଦ୍ରଗୁପ୍ତ ଶଶାଙ୍କ ପରାଜିତ ହେବାରୁ ମଧ୍ୟଦେଶ ଓ ଦାକ୍ଷିଣାତ୍ୟର ଦୁଇ ସମବାୟ ଉତ୍ତର ସମବାୟ ବିପକ୍ଷରେ ମିଶିଗଲେ ।

ଗୌଡ଼ ଓ ରାଢ଼ ରାଜ୍ୟ ପରେ ହର୍ଷଗୁପ୍ତ ବଙ୍ଗଳାରେ ନରେନ୍ଦ୍ରଗୁପ୍ତ ଶଶାଙ୍କଙ୍କୁ ମହାସାମନ୍ତ ରୂପେ ପ୍ରତିଷ୍ଠା କରିଥିଲେ । କଙ୍ଗୋଦ ଓ ଉତ୍କଳରେ ସ୍ଥାନୀୟ ରାଜା ଥିଲେ ମଧ୍ୟ ତାଙ୍କର ନିୟନ୍ତ୍ରଣ କ୍ଷମତା ଶଶାଙ୍କଙ୍କ ହାତରେ ଦିଆ ଯାଇଥିଲା । ସେଥି ପ୍ରକାରେ କଙ୍ଗୋଦର ମଧ୍ୟମରାଜ ଶୈଳୋଦ୍ଭବ ନିଜକୁ (କୋଶଳର) ମହାସାମନ୍ତ (ଗୌଡ଼ର) ଶଶାଙ୍କଙ୍କ ସାମନ୍ତରାଜା ବୋଲି ବର୍ଣ୍ଣନା କରିଅଛନ୍ତି ।

ଗୌଦ-ଢେଙ୍କାନାଳଠାରୁ ଆସାମ ପର୍ଯ୍ୟନ୍ତ ଭୂଖଣ୍ଡରେ ଶୁଲ୍କି ବଂଶର ବଭିନ୍ନ ଶାଖା ରାଜତ୍ୱ କରୁଥିଲେ । କାମରୂପ (ଆସାମ)ର ସ୍ତମ୍ଭ ବଂଶ ଶୁଲ୍କି ବଂଶର ଏକ ଶାଖା ଥିଲେ । ସେମାନଙ୍କର ପ୍ରଧାନ ରାଜା ଥିଲେ ଶାଲସ୍ତମ୍ଭ, ବଗ୍ରହସ୍ତମ୍ଭ, ପାଲକସ୍ତମ୍ଭ ଓ ବଜୟସ୍ତମ୍ଭ * । ଶୁଲ୍କିମାନେ ପରାଜିତ ହୋଇଥିଲେ କୋଶଳଗୁପ୍ତମାନଙ୍କ ଦ୍ୱାରା, ତୁଲନାରେ କାମରୂପର ଭାସ୍କରବର୍ମା ହର୍ଷବର୍ଦ୍ଧନଙ୍କୁ ଶଶାଙ୍କଙ୍କ ବରୋଧରେ ସାହାଯ୍ୟ କରିଥିଲେ ।

ମାଳବର ଦେବଗୁପ୍ତ ଓ କୋଶଳଗୁପ୍ତ ନରେନ୍ଦ୍ର ଶଶାଙ୍କ ଥାନେଶ୍ୱରର ରାଜ୍ୟବର୍ଦ୍ଧନଙ୍କୁ ପରାଜିତ ଓ ନହତ କଲେ (ଖ୍ରୀ:ଷ୍ଟ: ୬୦୬) । ନରେନ୍ଦ୍ରଗୁପ୍ତ ଓ ଦେବଗୁପ୍ତ ମୌଖାରୀମାନଙ୍କର କନୌଜ ରାଜ୍ୟ ଜିଣି ନେଲେ । ଏଥିରେ ଶଶାଙ୍କଙ୍କ ପରାକ୍ରମ ବଢ଼ିଗଲା । ସେ ହର୍ଷବର୍ଦ୍ଧନଙ୍କ ପ୍ରଧାନ ପ୍ରତିପକ୍ଷୀ ହେଲେ । ବାତାପୀର ପୁଲକେଶୀ ଚାଲୁକ୍ୟ ଓ ଶଶାଙ୍କ ପରସ୍ପର ସହାୟତା ଲୋଡ଼ିଲେ । ବଗ୍ରହ ଗୃହଳ

* History of Assam—Gait, P. 27.

ଏଥିରେ ଉତ୍ତର ଶକ୍ତି ଓ ଦାକ୍ଷିଣଶକ୍ତି ମଧ୍ୟରେ : ଏକ ପକ୍ଷରେ ହର୍ଷବର୍ଦ୍ଧନ ଓ ଭାସ୍କରବର୍ମା, ଅପର ପକ୍ଷରେ ପୁଲକେଶୀ ଓ ନରେନ୍ଦ୍ରଗୁପ୍ତ ।

ଗୌଡ଼ର ମହାରାଜ ଥିବାର ନରେନ୍ଦ୍ରଗୁପ୍ତ ଶଶାଙ୍କ କୋଶଳକୁ ଜୟକରିଥିଲେ, କିନ୍ତୁ ଥାନେଶ୍ୱରର ବଶ୍ୟତା ସ୍ୱୀକାର କରି ନ ଥିଲେ । ଶଶାଙ୍କ ଜୀବିତ ଥିବା ପର୍ଯ୍ୟନ୍ତ ହର୍ଷବର୍ଦ୍ଧନ ଗୌଡ଼କୁ ନିଜ ସାମ୍ରାଜ୍ୟ ମଧ୍ୟରେ ମିଶାଇ ପାରି ନ ଥିଲେ । ଶେଷରେ ଶଶାଙ୍କଙ୍କ ମୃତ୍ୟୁ ପରେ ଭାସ୍କରବର୍ମା ଗୌଡ଼କୁ ନିଜ ରାଜ୍ୟରେ ମିଶାଇ ନେଇଥିଲେ, କିନ୍ତୁ କୋଶଳ ଓ କଳିଙ୍ଗ ହର୍ଷବର୍ଦ୍ଧନଙ୍କ ରାଜ୍ୟ ବାହାରେ ରହିଥିଲା § । ପୁଲକେଶୀ ଓ ହର୍ଷବର୍ଦ୍ଧନଙ୍କ ମଧ୍ୟରେ ହୋଇଥିବା ସନ୍ଧିରେ ନର୍ମଦା ଉଭୟଙ୍କ ରାଜ୍ୟର ସୀମା ରୂପେ ରହିଲା, କିନ୍ତୁ କୋଶଳ ଚଞ୍ଚଳ ହେଉଥିଲା । ଏହି ଘଟଣାର ପରବର୍ତ୍ତୀ ଚୀନ ପରିବ୍ରାଜକ ହୁଏନ୍ ସାଙ୍ଗଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ କୋଶଳ, କଳିଙ୍ଗ ଓ ଓଡ଼୍ର ଏକ ସ୍ୱାଧୀନ ରାଜ୍ୟରୂପେ ପରସ୍ପରଠାରୁ ଅଲଗା ରହିଥିଲା । ଏହା ପ୍ରମାଣିତ ହୁଏ ପୁଲକେଶୀଙ୍କ ଆଇହୋଲ ଅନୁଶାସନରୁ ମଧ୍ୟ ‡ । କୋଶଳ ଓ କଳିଙ୍ଗକୁ ଭୟ ମାଡ଼ ଦେଇପାରିବା ପୁଲକେଶୀଙ୍କ କୀର୍ତ୍ତିର କାରଣ ହୋଇଥିଲା ।

§ "ହର୍ଷବର୍ଦ୍ଧନ କୋଶଳ ଓ କଳିଙ୍ଗ ଜୟ କରି ନ ଥିଲେ"— History of Orissa—R.D. Banerji, PP. 129-30.

‡ Epigraphia Indica, Vol. VI. PP. 6-11 :

ପର ପୃଷ୍ଠା ଦେଖ

ଶ୍ରୀମନ୍ତ ତୀବରଦେବ "ସକଳକୋଶଳାଧିପତି" ଥିଲେ । ସେଥିରୁ ଜଣାଯାଏ ଯେ "ଶରଭପୁର"-ରାଜବଂଶ ତାଙ୍କର ସାମନ୍ତ ରାଜା ଥିଲେ । ଏହି ଶରଭପୁରର ଅବସ୍ଥିତି ଏପର୍ଯ୍ୟନ୍ତ ନିର୍ଣ୍ଣୀତ ହୋଇନାହିଁ † । ଶରଭପୁର ବଂଶର ତାମ୍ରଶାସନମାନଙ୍କରୁ ସେମାନଙ୍କର ନିମ୍ନ ବଂଶଲତା ମିଳେ :—




ତାମ୍ରଶାସନମାନଙ୍କର ସମ୍ପୁଟଶିଖା (boxheaded) ଲିପିରୁ ଜଣାପଡ଼େ ଯେ, ଏହି ବଂଶ ରାଜତ୍ୱ କରୁଥିଲେ ଖ୍ରୀଷ୍ଟ ପଞ୍ଚମ ଶତକରେ । ଶରଭପୁର ବଂଶର ପାଞ୍ଚଟି ତାମ୍ରଶାସନ ମଧ୍ୟରୁ ଗୋଟିଏ

(ପୂର୍ବ ପୃଷ୍ଠା ପରେ)

ଦ୍ୱିତୀୟ ପୁଲକେଶୀ ଚାଲୁକ୍ୟଙ୍କ ଆଇହୋଲ ଅନୁଶାସନ—

"ବୃହଣାଂ ସ୍ୱଗୁଣୈଃ ନିବର୍ଦ୍ଧୁଙ୍ଗାଃ ।
ରହିତାନ୍ୟକ୍ଷିତିପାଳମାନଭଙ୍ଗାଃ ।
ଅଭବନ୍ନୁପଜାତଭୀତିଲିଙ୍ଗାଃ ।
ଯଦନୀକେନ ସକୋଶଳକଳିଙ୍ଗାଃ ।"

† ଶରଭପୁର ସମ୍ଭବତଃ ବିସୁଆର ସନ୍ନିହିତ ଅଞ୍ଚଳରେ ଥିଲା ।

ମହାଶିବଗୁପ୍ତଙ୍କ ରାଜତ୍ୱର, ପାଞ୍ଚଟି ମହାଭବଦେବଗୁପ୍ତଙ୍କ ରାଜତ୍ୱର ଏବଂ କୋଡ଼ିଏ ମହାପ୍ରବରରାଜଙ୍କ ରାଜତ୍ୱର । ମହାଶିବଗୁପ୍ତରାଜ ଓ ମହାଭବଦେବରାଜଙ୍କ ଶାସନମାନ ଶରଭପୁରରୁ ଘୋଷିତ ହୋଇଛି, କିନ୍ତୁ ମହାପ୍ରବରରାଜଙ୍କ ଶାସନ ରାଜଧାନୀ ଶ୍ରୀପୁରରୁ ଘୋଷିତ ହୋଇଛି । ସେ ନିଜକୁ ବର୍ଣ୍ଣନା କରିଛନ୍ତି "ସ୍ୱଭୁଜୋପାର୍ଜିତକ୍ଷିତିଃ" ବୋଲି :—

"ମାନମାତୃସ୍ୱତପ୍ରସାଦଂ ସ୍ୱଭୁଜୋପାର୍ଜିତକ୍ଷିତେଃ ।

ଶ୍ରୀମତ୍ପ୍ରବରରାଜସ୍ୟ ଶାସନଂ ଶତ୍ରୁଶାସନଂ ।" ¶

ଏଥିରୁ ପ୍ରତୀତ ହେବ ଯେ ସୋମଗୁପ୍ତ ରାଜବଂଶ ଓ ଶରଭପୁର ରାଜବଂଶ ମଧ୍ୟରେ କ୍ରମାଗତ କଳହ ଚାଲିଥିଲା । ଶେଷରେ ଶରଭପୁର ରାଜବଂଶ ସୋମଗୁପ୍ତମାନଙ୍କ ହାତରୁ ଶ୍ରୀପୁର ଛଡ଼ାଇ ନେଇଥିଲେ । କିନ୍ତୁ ଅଳ୍ପଦିନ ପରେ ତ୍ରିପୁରୀର ହୈହୟ କଳଚୁରୀମାନେ ଶରଭପୁରୀ ରାଜବଂଶର ଲୋପ ସାଧନ କରିଥିଲେ । ତାପରେ ଛତିଶଗଡ଼ ଓ ସମ୍ବଲପୁର ଅଞ୍ଚଳ ନିମନ୍ତେ ଲଢ଼ାଇଟା ଚାଲିଥିଲା ହୈହୟ ବଂଶ ଓ ଓଡ଼ିଶାର କେଶରୀ ବଂଶ ମଧ୍ୟରେ ।

ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ଅଭିଯାନ ପୂର୍ବବର୍ତ୍ତୀ କୋଶଳର କୌଣସି ଠିକ ବିବରଣ ଏପର୍ଯ୍ୟନ୍ତ ମିଳିନାହିଁ । ଦାକ୍ଷିଣାତ୍ୟର ରାଜାମାନଙ୍କ ମଧ୍ୟରେ ସମୁଦ୍ରଗୁପ୍ତ କୋଶଳେନ୍ଦ୍ର ମହେନ୍ଦ୍ରଙ୍କ ଉଲ୍ଲେଖ

¶ ମହାପ୍ରବରରାଜଙ୍କ ଠାକୁରଦିଆ (ସାରଙ୍ଗଗଡ଼-ମଧ୍ୟପ୍ରଦେଶ) ତାମ୍ରଶାସନ—
Mahakosala Historical Society's Papers, Vol. II. (1937), PP. 44-45.

କରିଛନ୍ତି । ସେତେବେଳେ (୩୨୨-୩୭୫ ଖ୍ରୀଷ୍ଟାବ୍ଦ) କୋଶଳରେ ଦୁଇ ଜଣ ପ୍ରଧାନ ରାଜା ଥିଲେ : କୋଶଳର ମହେନ୍ଦ୍ର ଓ ମହାକାନ୍ତାରର ବ୍ୟାଘ୍ରରାଜ ॥ ।

ଏହା ପରେ ଆମ୍ଭେମାନେ ପାଉଁ କୋଶଳର ଶିଳାଲେଖ ଦ୍ୱିତୀୟ ପୃଥ୍ୱୀଷେଣ ବାକାଟକଙ୍କ ବାଲଘାଟ ତାମ୍ରଶାସନରୁ । ପୃଥ୍ୱୀଷେଣ କୋଶଳ, ମେକଳ ଓ ମାଳବର ଅଧିରାଜ ଥିଲେ । ଗୁପ୍ତ ରାଜକୁମାରୀ ପ୍ରଭାବତୀଙ୍କ ପୁତ୍ରରେ ବାକାଟକମାନେ ଏହି ରାଜ୍ୟ ପାଇଥିଲେ । ପୃଥ୍ୱୀଷେଣ ପ୍ରଭାବତୀଙ୍କ ପୌତ୍ର ଥିଲେ ¶ ।

॥ କୌସଲ୍ଲକ ମହେନ୍ଦ୍ର, ମହାକାନ୍ତାରକ ବ୍ୟାଘ୍ରରାଜ କୌରଲ୍ୟକ ମନ୍ତରାଜ ପୈଷ୍ଟପୁରକ ମହେନ୍ଦ୍ର ଗିରିକୌଟ୍ଟୁରକ ସ୍ୱାମୀଦତ୍ତ ଏରଣ୍ଡ-ପଲ୍ଲକ ଦମନ କାଞ୍ଚେୟକ ବିଷ୍ଣୁଗୋପାଳ ଅବମୁକ୍ତକ ନୀଳରାଜ ବୈଙ୍ଗେୟକ ହସ୍ତିବର୍ମା ପାଲକ୍କକ ଉଗ୍ରସେନ ଦୈବରାଷ୍ଟ୍ରକ କୁବେର କୌସ୍ଥଲପୁରକ ଧନଞ୍ଜୟ ପ୍ରଭୃତି ସର୍ବଦକ୍ଷିଣାପଥରାଜଗ୍ରହଣମୋକ୍ଷାନୁ-ଗ୍ରହଜନିତ ପ୍ରତାପୋନ୍ମିଶ୍ର ମହାଭାଗ୍ୟ । (ପ୍ରୟାଗ ସ୍ତମ୍ଭ ଲେଖ—ସମୁଦ୍ରଗୁପ୍ତ)

¶ ମହାରାଜାଧିରାଜ ଶ୍ରୀ ଦେବଗୁପ୍ତସୁତାୟାଂ ପ୍ରଭାବତୀଗୁପ୍ତାୟାମୁତ୍ପନ୍ନସ୍ୟ ବାକାଟକବଂଶାଲଙ୍କାରଭୂତସ୍ୟ ଶମ୍ଭୋଃ ପ୍ରସାଦାତ୍ ଧୃତକାର୍ତ୍ତଯୁଗସ୍ୟ ବାକାଟକାନାଂ ମହାରାଜ ଶ୍ରୀ ପ୍ରବରସେନସ୍ୟ ସୂନୋଃ ପୂର୍ବାଧି-ଗତଗୁଣାଭିଶ୍ଳାଘାଦପହୃତବଂଶଶ୍ରିୟଃ କୋସଲମେକଲମାଲବାଧିପତ-ରଭ୍ୟର୍ଚ୍ଚିତଶାସନସ୍ୟ × × × × × × ବାକାଟକାନାଂ ମହାରାଜ ଶ୍ରୀ ନରେନ୍ଦ୍ରସେନସ୍ୟ ସୂନୋଃ × × × × ×

(ବାଲଘାଟ ତାମ୍ରଲେଖ—ଦ୍ୱିତୀୟ ପୃଥ୍ୱୀଷେଣ)

ବାକାଟକ ବଂଶରେ ଦ୍ୱିତୀୟ ପ୍ରବରସେନ ନାବାଳକ ଥିବାରୁ (ମଗଧର) ଦ୍ୱିତୀୟ ଚନ୍ଦ୍ରଗୁପ୍ତ ଉକ୍ତଦିନରୁ ବାକାଟକ ରାଜ୍ୟ ରକ୍ଷଣାବେକ୍ଷଣ କରୁଥିଲେ । ପ୍ରବରସେନ ସାବାଳକ ହେବାପରେ ମାଳବ, ମେକଳ ଓ କୋଶଳର ଶାସନଭାର ବାକାଟକ ରାଜାଙ୍କ ହସ୍ତକୁ ପ୍ରତ୍ୟର୍ପିତ ହୋଇଥିଲା । ଗୁପ୍ତମାନେ ବାକାଟକମାନଙ୍କ ସହାୟତାରେ କାଥିଆବାଡ଼ର ଶକକ୍ଷତ୍ରପମାନଙ୍କୁ ଦମନ କରିବାକୁ ଚାହୁଁଥିଲେ ।

ନରେନ୍ଦ୍ରସେନଙ୍କ ଭ୍ରାତୃଷ୍ପୁତ୍ର ଦେବସେନଙ୍କ ପୁତ୍ର ହରିସେନଙ୍କ ପର୍ଯ୍ୟନ୍ତ କୋଶଳ ବାକାଟକମାନଙ୍କ ଅଧୀନ ଥିଲା । ହରିସେନ କୁନ୍ତଳ, ଅବନ୍ତୀ (ମାଳବ), କଳିଙ୍ଗ, କୋଶଳ, ତ୍ରିକୂଟ, ଲାଟ ଓ ଆନ୍ଧ୍ରର ଅଧିପତି ଥିଲେ * । ଏହାର ଅଳ୍ପଦିନ ପରେ ଦାକ୍ଷିଣାତ୍ୟର ଚାଲୁକ୍ୟମାନେ ବାକାଟକ ରାଜ୍ୟ ଧ୍ୱଂସ କଲେ । ତାହାଁର ପରିଣାମରେ କୋଶଳର ସୋମଗୁପ୍ତମାନେ ନିଜ କ୍ଷମତା ସଞ୍ଚୟ କରିଥିଲେ ।

ଶିଳାଲେଖ ଓ ତାମ୍ରଶାସନର ଆଧାର ଉପରେ କହାଯାଇପାରିବ ଯେ ସୋମଗୁପ୍ତ ବଂଶର ରାଜା ଥିଲେ ନାଟବଲ । ଚତୁର୍ଥ ରାଜା ଇନ୍ଦ୍ରବଳ ବା ଭରତଙ୍କୁ ସମୁଦ୍ରଗୁପ୍ତ ବର୍ଣ୍ଣନା କରିଛନ୍ତି 'ମହେନ୍ଦ୍ର' ନାମରେ । ବୌଦ୍ଧ ଶିଳାଲେଖରେ ବର୍ଣ୍ଣିତ ହୋଇଛନ୍ତି

* ଅଜନ୍ତା ଶିଳାଲେଖ—(i) Archaeological Survey of Western India, Vol. IV. P. 124 ff.
(ii) Epigraphia Indica, Vol. IX.
(iii) Ancient History of the Deccan, P. 76 —Dubreuil.

ପ୍ରଥମ ରାଜା ନନ୍ନଦେବ । ଏହି ଶିଳାଲେଖରୁ ଜଣାଯାଏ ଯେ, ଅତି ପ୍ରାଚୀନ କାଳରେ ଏହି ବଂଶରେ ସୂର୍ଯ୍ୟଘୋଷ ନାମରେ ଜଣେ ରାଜା ଥିଲେ । ସେ ରାଜାମାନଙ୍କ ଉପରେ ରାଜା ଥିଲେ । ଉଚ୍ଚ ପ୍ରାସାଦ-ଶିଖରରୁ ପଡ଼ି ତାଙ୍କ ପୁତ୍ର ମୃତ ହେବାରୁ ସେହି ଶୋକରେ ସୂର୍ଯ୍ୟ-ଘୋଷଙ୍କ ତନ୍ତ୍ରୀ ଜୀବନ ଗ୍ଲାଉଲେ । ସଂସାରବଡ଼କ୍ତ ସୂର୍ଯ୍ୟଘୋଷ କୌଣସି ମୁନିଙ୍କ ପାଇଁ ଏକ ବିଶାଳ ଧାମ ରଚନା କରିଥିଲେ । ବହୁବର୍ଷ ପରେ ସେହି ବଂଶରେ ଉଦୟନନାମା ଜଣେ ନରପତି ଜାତ ହୋଇଥିଲେ । ଉଦୟନଙ୍କ ଚତୁର୍ଥ ପୁତ୍ର ଭବଦେବ ରଣଦକ୍ଷତା ଯୋଗୁଁ ହୋଇଥିଲେ 'ରଣକେଶରୀ' । ସେ ଶତ୍ରୁମାନଙ୍କର ଚନ୍ଦ୍ରାର ଦୁର୍ଗ ପରି ଥିବାରୁ "ଚନ୍ଦ୍ରାଦୁର୍ଗ" ତାଙ୍କର ଅନ୍ୟ ବିରୁଦ ଥିଲ । ଭବଦେବ ରଣକେଶରୀ ଚନ୍ଦ୍ରାଦୁର୍ଗଙ୍କ ଧୃତ ରାଜାଧିରାଜ ନନ୍ନଦେବ ସୂର୍ଯ୍ୟଘୋଷଙ୍କ ଦ୍ୱାରା ନିର୍ମିତ ମୁନିନିବାସର ପୁନର୍ନିର୍ମାଣ କରିଥିଲେ * । ନବମ ରାଜା ତୀବରଦେବ ଶ୍ରୀପୁର ରାଜଧାନୀରୁ ରାଜିମ ଓ ବଲୋଦା ତାମ୍ରଶାସନମାନ ଘୋଷଣା କରିଥିଲେ । ସେ ଅନେକ ରାଜାଙ୍କ ଉପରେ ଅଧିରାଜ ଏବଂ "ସକଳକୋଶଳାଧିପତି" ଥିଲେ । ତାଙ୍କ ପିତା ନନ୍ନଦେବ ଓ ପିତାମହ ଇନ୍ଦ୍ରବଳ । ତୀବରଦେବ ପରମ ବୈଷ୍ଣବ ମହାଶିବ ଥିଲେ । ରାଜିମ ତାମ୍ରଶାସନରେ ସେ

* The Journal of the Royal Asiatic Society —PP- 624—629.
Mahakosala Historical Society's Papers, Vol. 2, PP. 11—14—ବୌଦ୍ଧ ଶିଳାଲେଖ—ନନ୍ନଦେବ ।

ପେଣ୍ଡ୍ରାବନ୍ଧକର ପଚିପଦ୍ରକ ଗ୍ରାମ ଜଣେ ବ୍ରାହ୍ମଣଙ୍କୁ ¶ ଏବଂ ବଲୋଦା ଶାସନରେ ସୁନ୍ଦରିକା ମାର୍ଗସ୍ଥ ମେକ୍ଷଣ୍ଡକ ଗ୍ରାମ ଭରଣ ଜଣ ବ୍ରାହ୍ମଣଙ୍କୁ ଦାନ କରିଥିଲେ † ।

ଏକାଦଶ ରାଜା ବାଳାର୍ଜ୍ଜୁନଙ୍କ ଯୋଡ଼ିଏ ଶିଳାଲିପି ଓ ଗୋଟିଏ ତାମ୍ରଶାସନ ମିଳିଛି § । ଶ୍ରୀପୁର ଶିଳାଲିପିରେ ଉଦୟନଙ୍କ-ଠାରୁ ବାଳାର୍ଜ୍ଜୁନଙ୍କ ପର୍ଯ୍ୟନ୍ତ ସୋମବଂଶଲତା ବର୍ଣ୍ଣିତ ହୋଇଛି । ସେଥିରୁ ଜଣାଯାଏ ଯେ, ବାଳର୍ଜ୍ଜୁନ ଜଣେ ଅତି ପ୍ରବୀଣ ଧାନୁଷ୍କ ଥିଲେ । ମଲ୍ଲାର ତାମ୍ରଶାସନରୁ ଜଣାଯାଏ ଯେ, ସେ ହର୍ଷଗୁପ୍ତ ଦେବଙ୍କ ପୁତ୍ର ଥିଲେ । ମାତୁଳ ଭାସ୍କରବର୍ମାଙ୍କ ଅନୁରୋଧରେ ତରଡ଼ଂଶକ ଭୋଗୀସ୍ଥ କୈଳାଶପୁର ଗ୍ରାମ ତରଡ଼ଂଶକରେ ଅବସ୍ଥିତ ଏକ ଭିକ୍ଷୁ ସଂଘକୁ ଦାନ କରିଥିଲେ ।

¶ Mahakosala Historical Society's Papers Vol. 2—PP. 8—9.

† Mahakosala Historical Society's Papers Vol. 2—PP. 10—11.

Epigraphia Indica, Vol. 7, PP. 104—106.

§ ଶ୍ରୀପୁର ଶିଳାଲିପି—P. 16.

ଲକ୍ଷ୍ମଣ ଦେଉଳ ଶିଳାଲିପି—PP. 17.—21

ମଲ୍ଲାର ତାମ୍ରଶାସନ—P. 22.

(Vide Mahakosala Historical Society's Papers, Vol. 2)

ବାଲାର୍ଜୁନ ମହାଶିବଗୁପ୍ତଙ୍କ ପୁତ୍ର ଜନମେଜୟ ମହା-ଭବଗୁପ୍ତ । ଯେତେବେଳେ ଥାନେଶ୍ୱରର ହର୍ଷବର୍ଦ୍ଧନଙ୍କ ସହେ କୋଶଳର ଦୀର୍ଘ ଦଶ ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଥିଲା ଏବଂ ସେଥିରେ କୋଶଳର ସାମରିକ ଶକ୍ତିର ଯଥେଷ୍ଟ ଅପଚୟ ଘଟିଥିଲା, ସେତେ-ବେଳେ ବାଲାର୍ଜୁନ ମହାଶିବଗୁପ୍ତଙ୍କ ମୃତ୍ୟୁ ଘଟିଲା । ପ୍ରାଦେଶିକ ସାମନ୍ତ ରାଜାମାନେ ସ୍ୱାଧୀନ ହେବାର ଚେଷ୍ଟା ଚଳାଇଲେ । ତେଣୁ ରାଜଧାନୀରୁ ଅନୁପସ୍ଥିତ ରହି ଏବଂ ସ୍ଥାନେ ସ୍ଥାନେ ଶିବିର ସ୍ଥାପନ କରି ଜନମେଜୟଙ୍କୁ ବିଦ୍ରୋହ ଦମନ କରିବାକୁ ପଡ଼ିଲା । ବିଶାଳ କଳିଙ୍ଗ-କୋଶଳ ରାଜ୍ୟର ସୁଶାସନ ନିମନ୍ତେ ଓ ବିଦ୍ରୋହ ନିରାକରଣ ନିମନ୍ତେ ଶେଷରେ ସୋମବଂଶୀ ରାଜା ପ୍ରାନ୍ତିକବର୍ତ୍ତୀ ଶ୍ରୀପୁରରୁ କେନ୍ଦ୍ରବର୍ତ୍ତୀ ବିନୀତପୁର (ବିନିକା) ଓ ସୁବର୍ଣ୍ଣପୁର (ସୋନପୁର)କୁ ରାଜଧାନୀ ଉଠାଇ ଆଣିବାକୁ ବାଧ୍ୟ ହେଲେ ।

ଜନମେଜୟ ମହାଭବଗୁପ୍ତଙ୍କ ଆଠଟି ତାମ୍ରଶାସନ ମିଳିଛି ‡ । ପ୍ରଥମ ତାମ୍ରଶାସନ ସୋନପୁର ଶିବିରରୁ ଘୋଷିତ ହୋଇଥିଲା ରାଜତ୍ୱର ତୃତୀୟ ବର୍ଷରେ । ଏହି ଶାସନରେ ଲୁପତ୍ତୁର-ଖଣ୍ଡୀୟ (ଆଧୁନିକ ଆଠମଲ୍ଲିକର ଉପଲ ବା ଉମ୍ପୁଲ ପ୍ରଗଣାର) ବକବେଡୁଲ ଗ୍ରାମ (ଆଧୁନିକ ସୋନପୁରର ବାଙ୍କବେଡ଼ୁଲୀ) ଦାନ କରି ଯାଇଥିଲା । ବ୍ରାହ୍ମଣ ଆସିଥିଲେ ରାଢ଼ ବା ପଶ୍ଚିମବଙ୍ଗଳରୁ,

‡ (୧) ବକ୍ରତେନ୍ତଲି, (୨) ପାଟିଉଲି, (୩) ବଢ଼ବେଡ଼ା, (୪) ସତଲ୍ଲମା, (୫) କଲଞ୍ଜିର, (୬) ଆର୍ଙ୍ଗ୍ରାମ, (୭) ତୁଲେଣ୍ଡା ଓ (୮) ରଣ୍ଡାପଲାଣ୍ଡଳ ।

ତହିଁରୁ ଜଣାଯାଏ ଯେ ସେ ଜନମେଜୟଙ୍କ ରାଷ୍ଟ୍ର ମଧ୍ୟରେ ଥିଲା । ଉକ୍ତ ଗ୍ରହୀତା ସାମୟିକ ଭାବରେ ମେଲେଣ୍ଡରେ (ଆଧୁନିକ ସୋନ-ପୁରର ତରଭା ନିକଟବର୍ତ୍ତୀ ଶୁକତେଲ କୂଳସ୍ଥ ମେଣ୍ଡା ଗ୍ରାମରେ) ରହୁଥିଲେ ।

ଦ୍ୱିତୀୟ ତାମ୍ରଶାସନ ଘୋଷିତ ହୋଇଥିଲା ମୁରସୀମ ଶିବିରରୁ ରାଜତ୍ୱର ଷଷ୍ଠ ବର୍ଷରେ । ମୁରସୀମ ଆଧୁନିକ ବଲାଙ୍ଗିର-ପାଟଣା ଅନ୍ତଃପାତୀ ଜରସିଂହାର ମୁରସିଙ୍ଗ ଗ୍ରାମ । ଏଥିରେ ପୋତା (ଆଧୁନିକ ପାଟଣାର ସୋନପୁର ସବଡ଼ିଭିଜନର ପୋଟା) ବିଷୟସ୍ଥ ପାସିତଲ ଗ୍ରାମ (ପାଟଣା ଅନ୍ତଃପାତୀ ଟିଟିଲାଗଡ଼ ସବଡ଼ିଭିଜନର ସାଇଁତଲା) ଗ୍ରାମଦାନ କରି ଯାଇଥିଲା । ସାଇଁତଲା ବଲାଙ୍ଗିର ସହରରୁ ୨୧ ମାଇଲ ଦୂରରେ ପଶ୍ଚିମ ଦିଗରେ ଅବସ୍ଥିତ । ଗ୍ରହୀତା କୋମ୍ପା-ଟିରରୁ (ସମ୍ବଲପୁର ଜିଲ୍ଲା ବରପାଲି ନିକଟସ୍ଥ କାଇଁଟିର) ଗ୍ରାମରୁ ଆସିଥିଲେ ଏବଂ ଲୋଇ-ଶୃଙ୍ଗାରେ (ପାଟଣା ଲୋଇସିଙ୍ଗା) ଗ୍ରାମରେ ରହୁଥିଲେ ।

ତୃତୀୟ ତାମ୍ରଶାସନ ମଧ୍ୟ ଘୋଷିତ ହୋଇଥିଲା ସେହି ମୁରସୀମ ଶିବିରରୁ ରାଜତ୍ୱର ସେହି ଷଷ୍ଠ ବର୍ଷରେ । ଏହି ଶାସନରେ ଅଙ୍ଗତଟ ବିଷୟସ୍ଥ (ଆଧୁନିକ ଅଙ୍ଗନଦୀ କୂଳସ୍ଥ) ବକବେଡ୍ଡା ଗ୍ରାମ (ପାଟଣା ଅନ୍ତଃପାତୀ ବକବେଡ଼ା ବା ବକଗୁଡ଼ା) ଦାନ କରି ଯାଇଥିଲା ।

ଚତୁର୍ଥ ତାମ୍ରଶାସନ ଘୋଷିତ ହୋଇଥିଲା ମୁରସୀମ ଶିବିରରୁ ରାଜତ୍ୱର ଅଷ୍ଟମ ବର୍ଷରେ । ସେଥିରେ ଆଧୁନିକ ସମ୍ବଲପୁର

ଜିଲ୍ଲାର ବରପାଲି ନିକଟବର୍ତ୍ତୀ କଣଡଲଡା (କଣର୍ଡା ବା କୁଣ୍ଡୁର୍ଡ଼ା) ବିଷୟସ୍ଥ ସତଲ୍ଲମା (ସତଲମା) ଗ୍ରାମ ଦାନ କରି ଯାଇଥିଲ ।

ପଞ୍ଚମ ତାମ୍ରଶାସନ ଘୋଷିତ ହୋଇଥିଲ କସରକେଲ୍ଲା ଶିବିରରୁ ରାଜତ୍ୱର ଏକାଦଶ ବର୍ଷରେ । ସେଥିରେ ପୃଥୁବଲ୍ଲକ୍ର (ମହାନଦୀ କୂଳସ୍ଥ ଦେଓପୁର ନିକଟବର୍ତ୍ତୀ ପିଥୋଡ଼ା) ଲଙ୍ଗିର ଗ୍ରାମ (ପିଥୋଡ଼ାରୁ କୋଡ଼ିଏ ମାଇଲ ଦୂରରେ ଥିବା ଲଙ୍ଗିର ଗ୍ରାମ) ଦାନ କରି ଯାଇଥିଲ । କସରକେଲ୍ଲା ବଲାଙ୍ଗିର ସହରଠୁ ଛଅ ମାଇଲ ଦୂରରେ ଅବସ୍ଥିତ ।

ଷଷ୍ଠ, ସପ୍ତମ ଓ ଅଷ୍ଟମ ତାମ୍ରଶାସନ ଘୋଷିତ ହୋଇଥିଲ ଆରମ ଶିବିରରୁ ରାଜତ୍ୱର ଏକାଦଶ ବର୍ଷରେ । ଏହି ଶାସନ-ମାନଙ୍କରେ ଦାନ କରି ଯାଇଥିଲ :—

୧ । ତ୍ରୁଲୁମ୍ବ ବିଷୟସ୍ଥ (ସମ୍ବଲପୁର ଜିଲ୍ଲାର ମହାନଦୀ କୂଳସ୍ଥ ତ୍ରୁରୁମ) ଆର୍କିଗ୍ରାମ (ଅଗେଁ—ତ୍ରୁରୁମ ଓ ଅରଗାଁର ଠିକ୍ ମଝିରେ ଜୀରା ନଦୀ) ।

୨ । ସଦାନା ବିଷୟସ୍ଥ (ପାଟଣା ଅନ୍ତଃପାତୀ ସଣ୍ଡାବାହୀ) ତ୍ରୁଲେଣ୍ଡା (ବଲଙ୍ଗିର ସହରରୁ ଏଗାର ମାଇଲ ଦୂରବର୍ତ୍ତୀ ତ୍ରୁଲଣ୍ଡା) ଗ୍ରାମ ।

୩ । ପୋଅା ବିଷୟସ୍ଥ (ସୋନପୁର ଅନ୍ତଃପାତୀ ଆଧୁନିକ ପୋଅା) ରଣ୍ଡା (ବଲଙ୍ଗିର ସହରରୁ ଦୁଇ ମାଇଲ ଦୂରବର୍ତ୍ତୀ ରେଣ୍ଡା) ଗ୍ରାମ ଏବଂ ଅଳାଣ୍ଡଳା (ବଲଙ୍ଗିର ସହରରୁ ତିନି ମାଇଲ ପୂର୍ବକୁ ଅବସ୍ଥିତ) ଗ୍ରାମ ।

ପୂର୍ବୋକ୍ତ ବିବରଣୀରୁ ବୁଝାପଡ଼ିବ ଯେ ରାଜତ୍ୱର ଏକବିଂଶ ବର୍ଷପର୍ଯ୍ୟନ୍ତ ଜନମେଜୟ ସମ୍ବଲପୁର ଅଞ୍ଚଳରେ ରାଜଧାନୀ ସ୍ଥାପନ କରି ନ ଥିଲେ ଏବଂ ବିଦ୍ରୋହ ପ୍ରଶମନାର୍ଥ ତାଙ୍କୁ ମଝିରେ ମଝିରେ ରାଜଧାନୀ ଶ୍ରୀପୁରରୁ ପାଟଣା ଓ ସୋନପୁର ଅଞ୍ଚଳକୁ ଆସିବାକୁ ହେଉଥିଲା । ସୁତରାଂ ସୋମବଂଶୀ ରାଜା ସୋନପୁର-ବିନୀତାରେ ରାଜଧାନୀ ନିବେଶ କରିବାକୁ ଆବଶ୍ୟକ ମନେକରିଥିଲେ ।

ଜନମେଜୟ ମହାଭବଗୁପ୍ତଙ୍କ ପୁତ୍ର ଯଯାତି ମହାଶିବଗୁପ୍ତ । ତାଙ୍କର ଚାରୋଟି ତାମ୍ରଶାସନ ମିଳିଛି * । ପ୍ରଥମ ଶାସନ ବିନୀତ-ପୁରରୁ (ଆଧୁନିକ ସୋନପୁର ବିନିକାରୁ) ଘୋଷିତ ହୋଇଛି । ଅର୍ଥାତ୍ ରାଜତ୍ୱର ପ୍ରାକ୍‌କାଳରୁ ଯଯାତି ଶ୍ରୀପୁର ପରିବର୍ତ୍ତେରେ ବିନୀତପୁରକୁ ରାଜଧାନୀ କରିଥିଲେ । ଏହି ରାଜଧାନୀର ନାମ "ଯଯାତିନଗର" ହୋଇଥିଲା ଏବଂ ଯଯାତି ଏହାର ପ୍ରତିଷ୍ଠାତା ଥିଲେ । ଜନମେଜୟଙ୍କ ରାଜତ୍ୱର ଶେଷରେ ଏହି ରାଜଧାନୀ ସ୍ଥାପିତ ହୋଇଥିଲା । ବିନିକା ଅତି ପ୍ରାଚୀନ ବାଣିଜ୍ୟକେନ୍ଦ୍ର । ଯାଜପୁରକୁ ଯଯାତିନଗର ବୋଲି କହିବା ଏକ ଅପ୍ରାସଙ୍ଗିକ ଓ ଉଦ୍ଭଟ କଳ୍ପନା । ନଗରପ୍ରାସଙ୍ଗିକ ମହାନଦୀର ବର୍ଣ୍ଣନା ଅତି ମନୋରମ ଓ ଲକ୍ଷ୍ୟ କରିବା ବିଷୟ ।

ଯଯାତିଙ୍କ ପ୍ରଥମ ତାମ୍ରଶାସନ ଘୋଷିତ ହୋଇଥିଲା ରାଜତ୍ୱର ନବମ ବର୍ଷରେ, ଯହିଁରେ ଦାନ କରାଯାଇଥିଲା ଦକ୍ଷିଣ ତୋଷଳାର

* (୧) ଚନ୍ଦ୍ରଗ୍ରାମ ତାମ୍ରଶାସନ, (୨) କଟକା ତାମ୍ରଶାସନ, (୩) ଲୁଭ୍ର-ଭୁମା ତାମ୍ରଶାସନ, (୪) ମେଲ୍ଡେଲ ତାମ୍ରଶାସନ ।

(ଚିଲିକା ନିକଟରେ) ମରଡ଼ ବିଷୟସ୍ଥ ଚନ୍ଦ୍ରଗ୍ରାମ । ସୋମବଂଶୀମାନେ କଳିଙ୍ଗର ରାଜାଧିରାଜ ଥିଲେ, ଏହା ତହିଁର ପ୍ରମାଣ । ଦ୍ୱିତୀୟ ଶାସନ ଘୋଷିତ ହୋଇଥିଲା ବିନୀତପୁରରୁ ରାଜତ୍ୱର ପଞ୍ଚଦଶ ବର୍ଷରେ । ସେଥିରେ କୋଶଳ ଅନ୍ତର୍ଗତ ଉତ୍ତର ପଲ୍ଲିକାର ନନ୍ଦନ (ସୋନପୁରର ନନ୍ଦନା ବା ନମନା) ଗ୍ରାମ ଦାନ କରା ଯାଇଥିଲା । ଗ୍ରହୀତା କୋଶଳର ମହମେଣ୍ଡାର (ପାଟଣାର ମଡ଼ମଡ଼ା) ଅଧିବାସୀ ଥିଲେ । ତୃତୀୟ ଶାସନ ଘୋଷିତ ହୋଇଥିଲା ଯଜାତିନଗରରୁ ରାଜତ୍ୱର ଅଷ୍ଟାଦଶ ବର୍ଷରେ । ସେଥିରେ (ପାଟଣାର) ଷଣ୍ଡବତୀ (ନଦୀ) କୂଳସ୍ଥ ତେଲାଟଟ ବିଷୟର ଲୁଦ୍ରୁମା (ଆଧୁନିକ ଲୁରମା ବା ଲରମ୍ବା) ଗ୍ରାମ ଦାନ କରା ଯାଇଥିଲା । ଏହି ଗ୍ରାମ ଶୁକତେଲ ନଦୀକୂଳରେ ଅବସ୍ଥିତ । ଷଣ୍ଡବତୀ କ୍ରମେ 'ଶୁକତି' ଓ 'ଶୁକତେଲ୍' ନାମରେ ପରିଣତ ହୋଇଥିବା ସମ୍ଭବ । ଚତୁର୍ଥ ଶାସନ ଘୋଷିତ ହୋଇଥିଲା ସେହି ଯଜାତିନଗରରୁ ରାଜତ୍ୱର ପଞ୍ଚବିଂଶ ବର୍ଷରେ । ସେଥିରେ ତେଲ ନଦୀ ବିଷୟରେ ଥିବା ତେଲତେଲ (ପାଟଣା ଗଡ଼ଠାରୁ ପାଞ୍ଚ ମାଇଲ ଦୂରରେ ଉତ୍ତରଦିଗରେ ଥିବା ଦଲ୍‌ଦଲୀ) ଗ୍ରାମ ଦାନ କରା ଯାଇଥିଲା ।

ଯଜାତି ମହାଶିବଗୁପ୍ତଙ୍କ ପୁତ୍ର ଶ୍ରୀ ଭୀମରଥ ମହାଭବଗୁପ୍ତ ରାଜଦେବ ଥିଲେ । ତାଙ୍କର କେବଳ ଗୋଟିଏ ତାମ୍ରଶାସନ ମିଳିଛି । ତାହା ଘୋଷିତ ହୋଇଥିଲା ଯଜାତିନଗରରୁ ବା ବିନୀକାରୁ ରାଜତ୍ୱର ତୃତୀୟ ବର୍ଷରେ । ସେଥିରେ କୋଶଳ ଦେଶର ଗୌଡ଼ ସିମିଣ୍ଡିଲୀ (ସୋନପୁର ନଗରରୁ ଦୁଇ କୋଶ ଦୂରରେ ଥିବା ସିଅଁ ନିକୀ) ଗ୍ରାମ ଦାନ କରା ଯାଇଥିଲା ।

ପୂର୍ବୋକ୍ତ ବିବରଣୀରୁ ବୁଝାଯିବ ଯେ ଭୀମରଥଙ୍କ ରାଜତ୍ୱ ପର୍ଯ୍ୟନ୍ତ ବିନୀତା କୋଶଳ-କଳିଙ୍ଗର ରାଜଧାନୀ ଥିଲା ।

ରଣକ ଶ୍ରୀପୃଥ୍ୱୀଙ୍କ କୁଦୋପାଲ୍ଲିର ଖଣ୍ଡିତ ତାମ୍ରଶାସନରୁ ଜଣାଯାଏ ଯେ ଭୀମରଥଙ୍କ ସାମନ୍ତ ରଜା ଶ୍ରୀପୃଥ୍ୱୀ ଆଧୁନିକ ବାମଣ୍ଡା ନଗରରେ ରହୁଥିଲେ । ଏହି ଶାସନ ଭୀମରଥଙ୍କ ରାଜତ୍ୱର ତ୍ରୟୋଦଶ ବର୍ଷରେ ଘୋଷିତ ହୋଇଥିଲା ।

ସୋମେଶ୍ୱର ଦେବଙ୍କ ସୋନପୁର ତାମ୍ରଶାସନରୁ ଜଣାଯାଏ ଯେ ସୋମେଶ୍ୱର ଦେବ ସୋମଗୁପ୍ତ ବଂଶୀୟ ରାଜକୁମାର ଥିଲେ । ସେ ମହାଭବଗୁପ୍ତଙ୍କ ଦ୍ୱାରା ପଶ୍ଚିମ ଲଙ୍କା(କୋଶଳ)ର ସାମନ୍ତ ବା ଶାସନକର୍ତ୍ତା ରୂପେ ନିଯୁକ୍ତ ହୋଇଥିଲେ । ଏତେବେଳେ ବିନୀତ-ପୁର ପରିବର୍ତ୍ତେ ସୋନପୁର ସୋମଗୁପ୍ତ ସାମ୍ରାଜ୍ୟର ପଶ୍ଚିମଖଣ୍ଡର ରାଜଧାନୀ ହୋଇଥିଲା । ସୋନପୁର ଖଣ୍ଡର ଅନ୍ୟ ନାମ ଲଙ୍କା ବା ପଶ୍ଚିମ ଲଙ୍କା ଥିଲା * । ସୋନପୁର ମହାସାମନ୍ତ ପରାକ୍ରମୀ ଥିଲେ

* ସ୍ୱସ୍ତି ଶ୍ରୀ ସୁବର୍ଣ୍ଣପୁରାତ୍ ପରମ ମାହେଶ୍ୱର ପରମ ଭଟ୍ଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳତିଳକ ତ୍ରିକଳିଙ୍ଗାଧିପତି ଶ୍ରୀ ମହାଭବଗୁପ୍ତରାଜଦେବ ପାଦାନୁଧ୍ୟାତ ଶ୍ରୀ ଉଦ୍ୟୋତ କେଶରୀ ରାଜଦେବ ପ୍ରସାଦୀକୃତ କୋଶଳରାଜ୍ୟାଭିଷିକ୍ତ ଶ୍ରୀ ଅଭିମନ୍ୟୁଦେବସ୍ୟ ଶାସିତ ରାଜ୍ୟେ ପରମ ମାହେଶ୍ୱର ପରମ ଭଟ୍ଟାରକ କୁମାରାଧିରାଜ ପରମେଶ୍ୱର ପଶ୍ଚିମଲଙ୍କାଧିପତି ସୋମକୁଳକମଳକଳିକାବିକାଶଭାସ୍କର କୁମାର ଶ୍ରୀ ସୋମେଶ୍ୱର ଦେବପାଦାଃ କୁଶଳିନଃ ।

(ସୋମେଶ୍ୱର ଦେବଙ୍କ ସୋନପୁର ତାମ୍ରଶାସନ—**Epigraphia Indica, Vol. XII, PP.237–242—B.C.Mazumdar)**

ଏବଂ ପଶ୍ଚିମ କାଳରେ ଓଡ଼ିଶା ରାଜାଙ୍କ ନାମମାତ୍ର ଅଧୀନତାରେ ରହୁଥିଲେ । ହୈହୟ ବଂଶୀୟ ରତ୍ନପୁରର ରାଜା ଜାଜଲ୍ଲଦେବ ସୋନପୁରର ଏହି କୁମାର ସୋମେଶ୍ୱର ଦେବଙ୍କୁ ଜୟ କରିଥିଲେ † । ଏହି ଦିନଠାରୁ ଆରମ୍ଭ ହୋଇଥିଲା ହୈହୟବଂଶ ଓ ଓଡ଼ିଶାର କେଶରୀବଂଶ ମଧ୍ୟରେ ସମ୍ବଲପୁର ଅଞ୍ଚଳ ନେଇ ଲଢ଼ାଇତିହାସ, ଯାହା ଅନେକ ଯୁଦ୍ଧ ପରେ ନିଷ୍ପତ୍ତି ହେଲା ଓଡ଼ିଶାର ଗଙ୍ଗବଂଶର ବିଜୟ ନିଶାଣରେ ।

ଜନମେଜୟ ମହାଭବଗୁପ୍ତ ଚୌଦ୍ୱାରରେ ଜଣେ ସାମନ୍ତ ବା ଶାସନକର୍ତ୍ତା ରଖିଥିଲେ । ସେ ଚୌଦ୍ୱାର ନଗରୀର ନିର୍ମାଣକାର୍ଯ୍ୟ ଆରମ୍ଭ କରିଥିଲେ, କିନ୍ତୁ ଯଯାତି ଯାଜପୁରକୁ ରାଜଧାନୀ କରିଥିଲେ ¶ । ଭୀମରଥ ଯାଜପୁରକୁ ପ୍ରଧାନ ରାଜଧାନୀ କରିଥିଲେ ଏବଂ ସୋନପୁରରେ ଜଣେ କୁମାରଙ୍କୁ ପଶ୍ଚିମ ଲଙ୍କା ବା କୋଶଳର ପ୍ରତିନିଧି ରୂପେ ରଖିଥିଲେ । ଯାଜପୁର ଉତ୍ତାରୁ ଭୁବନେଶ୍ୱର ସୋମଗୁପ୍ତ ବଂଶର ରାଜଧାନୀ ହୋଇଥିଲା ।

† ଜାଜଲ୍ଲଦେବଙ୍କ ରତ୍ନପୁର ଶିଳାଲେଖ ।

¶ ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର ଶିଳାଲିପିରୁ ଜଣାଯାଏ ଯେ ଜନମେଜୟ ଉତ୍କଳ ରାଜାଙ୍କୁ ହତ୍ୟା କରିଥିଲେ । ଯାଜପୁରର ଭୌମକର ବଂଶୀୟ ରାଜାଙ୍କ ସଙ୍ଗେ ଜନମେଜୟଙ୍କ ବିଗ୍ରହ ଘଟିଥିବା ଏଥିରୁ ଅନୁମାନ ହୁଏ । ଜନମେଜୟ ଗୃହ ଦ୍ୱାରବଶିଷ୍ଟ ଚୌଦ୍ୱାର ରାଜଧାନୀ ନିର୍ମାଣ ଶେଷ କରିବା ପୂର୍ବରୁ ଭୌମକର ରାଜ୍ୟ ଜିଣିଥିଲେ ଏବଂ ଚୌଦ୍ୱାର ପରିବର୍ତ୍ତିରେ ଯାଜପୁରକୁ ରାଜଧାନୀ କରିବା ନିମନ୍ତେ

ପର ପୃଷ୍ଠା ଦେଖ

କୁମାର ସୋମେଶ୍ୱର ଦେବଙ୍କ ସୋନପୁର ତାମ୍ରଶାସନରୁ ଜଣାଯାଏ ଯେ ଖ୍ରୀଷ୍ଟ ଅଷ୍ଟମ ଶତକରେ ବସୁକଲ୍ପ କେଶରୀ (ବା ଉଦ୍ୟୋତକେଶରୀ) କୋଶଳଖଣ୍ଡର ଶାସନ ନିମନ୍ତେ ନିଜ ଭ୍ରାତା ଅଭିମନ୍ୟୁ ଦେବଙ୍କୁ ନିଯୁକ୍ତ କରିଥିଲେ । ଧର୍ମରଥ ମହାଶିବଗୁପ୍ତ ଅପତ୍ୟହୀନ ଥିବାରୁ କନିଷ୍ଠ ଶାଖାର ଚଣ୍ଡୀହର ଯଜାତି ମହାଶିବ ଗୁପ୍ତଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ॥ । କିନ୍ତୁ ଚଣ୍ଡୀହରଙ୍କ ଭ୍ରାତା ନଘୁଷ ବିବାଦ କରି ବଳାତ୍କାର ସିଂହାସନରେ ବସିଲେ । ନଘୁଷଙ୍କର ଏବେ ଏକ ତାମ୍ରଶାସନ ମିଳିଛି । ଚଣ୍ଡୀହରଙ୍କ ପୁତ୍ର ଉଦ୍ୟୋତକେଶରୀଙ୍କ ପରେ ତାଙ୍କ ଭ୍ରାତା ଅଭିମନ୍ୟୁ କୋଶଳଖଣ୍ଡ ଶାସନ କରୁଥିଲେ । ସୋମଗୁପ୍ତ ବଂଶୀୟ କୁମାର ସୋମେଶ୍ୱର ଦେବ ସେତେବେଳେ ସୋନପୁରର ସାମନ୍ତ ରାଜା ଥିଲେ ।

ବ୍ରହ୍ମେଶ୍ୱର ମନ୍ଦିର ଶିଳାଲିପିରୁ ଆହୁରି ଜଣାଯାଏ ଯେ ଚଣ୍ଡୀହର ଯଜାତି ମହାଶିବଗୁପ୍ତ ସୂର୍ଯ୍ୟବଂଶୀୟ ରାଜକନ୍ୟା କୋଲା-

ଅଧିକ ପସନ୍ଦ କରୁଥିଲେ । ଯଜାତିଙ୍କ ଅମଳରେ ଯାଜପୁର ଏକ ନଗରୀରେ ପରିଣତ ହେଲା ଏବଂ ବିରଜାମନ୍ଦିର, ଦଶାଶ୍ୱମେଧଘାଟ ପ୍ରଭୃତି ସେଠାରେ ନିର୍ମିତ ହୋଇଥିଲା । ସେଠାରେ ଏକ ବଡ଼ ଯଜ୍ଞ ମଧ୍ୟ ହୋଇଥିଲା । କନୌଜରୁ ଅସଂଖ୍ୟ ବ୍ରାହ୍ମଣ ଆସି ଯାଜପୁରରେ ବାସ କରିଥିଲେ ।

କିନ୍ତୁ ସୋମଗୁପ୍ତମାନଙ୍କ ପକ୍ଷରେ ରାଜଧାନୀ ସକାଶେ ଯାଜପୁର ସୁବିଧାଜନକ ବୋଧ ହୋଇ ନ ଥିଲା । ସେମାନେ ଅଳ୍ପଦିନ ପରେ ଭୁବନେଶ୍ୱରକୁ ରାଜଧାନୀ ଉଠାଇ ନେଇଥିଲେ ।

॥ ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର ଶିଳାଲେଖ ।

ବତୀଙ୍କୁ ବିବାହ କରିଥିଲେ । ସେହାଙ୍କ ଗର୍ଭରୁ ଉଦ୍ୟୋତକେଶରୀ ଜାତ ହୋଇଥିଲେ । ସେହି କୋଲାବତୀ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରିଥିଲେ । ଖଣ୍ଡଗିରିର ଲଲାଟେନ୍ଦୁକେଶରୀ ଗୁମ୍ଫା ଓ ନବମୁନି ଗୁମ୍ଫାରେ ଉଦ୍ୟୋତକେଶରୀଙ୍କ ଆଉ ଦୁଇ ଗୋଟି ଶିଳାଲିପି ମିଳିଛି । ଲଲାଟେନ୍ଦୁକେଶରୀ ଗୁମ୍ଫାର ଲେଖରୁ ଜଣାଯାଏ ଯେ ରାଜତ୍ୱର ପଞ୍ଚମ ବର୍ଷରେ ଉଦ୍ୟୋତକେଶରୀ କୁମାରପର୍ବତର (ଉଦୟଗିରିର) ଜୀର୍ଣ୍ଣ ମନ୍ଦିର ଓ କୂପମାନ ସଂସ୍କାର କରିଥିଲେ । ନବମୁନି ଗୁମ୍ଫାର ଲେଖରୁ ଜଣାଯାଏ ଯେ ଉଦ୍ୟୋତକେଶରୀଙ୍କ ରାଜତ୍ୱର ଅଷ୍ଟାଦଶ ବର୍ଷରେ ଆର୍ଯ୍ୟ କୁଳଚନ୍ଦ୍ରଙ୍କ ଶିଷ୍ୟ ଶୁଭଚନ୍ଦ୍ର ତୀର୍ଥପର୍ଯ୍ୟଟନରେ ନବମୁନି ଗୁମ୍ଫାକୁ ଆସିଥିଲେ ।

ଏଠାରେ ବଙ୍ଗଳ ସମ୍ପର୍କର ପୁନରାଲୋଚନା କରାଯାଉ । ଅଷ୍ଟମ ଖ୍ରୀଷ୍ଟ ଶତକ ପୂର୍ବବର୍ତ୍ତୀ ବଙ୍ଗଳର ସ୍ୱତନ୍ତ୍ର ଇତିହାସ ମିଳେ ନାହିଁ । ଯାହା କିଛି ମିଳେ, ମଗଧ କିମ୍ବା କଳିଙ୍ଗର ସମ୍ପର୍କ ନେଇ । ବଙ୍ଗଳର ପ୍ରଥମ ସ୍ୱତନ୍ତ୍ର ରାଜବଂଶ ତନ୍ତ୍ୟା ପାଳ ବଂଶ ।

ଖ୍ରୀଷ୍ଟାବ୍ଦ ୬୧୯-୬୩୭ ମଧ୍ୟରେ ନରେନ୍ଦ୍ରଗୁପ୍ତ ଶଶାଙ୍କର ମୃତ୍ୟୁ ଘଟିଥିଲା । ଏହି କାଳ ମଧ୍ୟରେ କାମରୂପର ଭାସ୍କରବର୍ମା ବଙ୍ଗଳା ହସ୍ତଗତ କରିଥିଲେ । ଅଳ୍ପଦିନ ମଧ୍ୟରେ ମଗଧର ପରବର୍ତ୍ତୀ ଗୁପ୍ତ ରାଜବଂଶ ପଶ୍ଚିମ ବଙ୍ଗ ଅଧିକାର କଲେ ଏବଂ ଖଡ୍‌ଗ ନାମରେ ଏକ ବଂଶ ପୂର୍ବ ବଙ୍ଗରେ ରାଜତ୍ୱ ସ୍ଥାପନ କଲେ । କିନ୍ତୁ ଅଷ୍ଟମ ଶତାବ୍ଦୀ ବେଳକୁ କନୌଜର ଯଶୋବର୍ମା ବଙ୍ଗ ଆକ୍ରମଣ କଲେ । ଏହି ଆକ୍ରମଣ ଫଳରେ ବଙ୍ଗଳାରେ ଏତେ ଅରାଜକତା ହେଲ ଯେ ଗୋପାଳ ନାମରେ ଏକ ବ୍ୟକ୍ତି ସେହି

ସୁଯୋଗରେ ଜନତାର ସାହାଯ୍ୟରେ ବଙ୍ଗଳର ରାଜଦଣ୍ଡ ଧାରଣ କରିବାକୁ ସମର୍ଥ ହୋଇଥିଲେ । ତାଙ୍କ ବଂଶ ପାଳବଂଶ ନାମରେ ଖ୍ୟାତ ।

ପାଳବଂଶର ଦ୍ୱିତୀୟ ରାଜା ଧର୍ମପାଳ (୭୬୨—୭୮୪ ?) ଓଡ଼ିଶା ହାତରୁ ଗୌଡ଼ ଓ ରାଢ଼କୁ ମୁକ୍ତ କରିଥିଲେ । ତେଣୁ ଚଣ୍ଡୀହାର ମହାଭୁ ଯୁଦ୍ଧ ଅଭିଯାନରେ ବାହାରି ଗୌଡ଼, ରାଢ଼, ଲାଟ ଓ ବଙ୍ଗ ପ୍ରଭୃତି ଜୟ କଲେ । ଗୌଡ଼ ଓ ରାଢ଼ରେ ସୋମକୁଳର କ୍ଷମତା ପୁନଃ ପ୍ରତିଷ୍ଠିତ ହେଲା । କୌଣସି ଏକ ତାମ୍ରଫଳକରେ ଚଣ୍ଡୀହାର ମାଳବ, ଗୁର୍ଜର, ଦ୍ରାବିଡ଼ ଓ କାଞ୍ଚୀବିଜେତା ବୋଲି ବର୍ଣ୍ଣିତ ହୋଇଅଛନ୍ତି ।

ନବମୁନିଗୁମ୍ଫାର ଶିଳାଲେଖ ଓ କୁମାରପର୍ବତର ଜୀର୍ଣ୍ଣ ମନ୍ଦିରକୂପାଦିର ସଂସ୍କାର କାର୍ଯ୍ୟରୁ ଅନୁମାନ କରାଯାଏ ଯେ ଚଣ୍ଡୀହର ଧର୍ମ ପ୍ରତି ଶ୍ରଦ୍ଧା ଥିଲେ । ସେ ଆଲୋଚନା କରୁଥିଲେ ବୌଦ୍ଧ ଓ ଜୈନ ଧର୍ମଗ୍ରନ୍ଥମାନ । M. Sylvan Levi ନାମକ ଜନୈକ ଐତିହାସିକ କହନ୍ତି ଯେ ଓଡ଼ିଶାର ରାଜା ଚୀନ ସମ୍ରାଟ୍ ତାଇସୁଙ୍ଗ ଦରବାରକୁ ବୌଦ୍ଧଗ୍ରନ୍ଥ "ଅବତଂସକ"ର ଶେଷ ଅଧ୍ୟାୟ 'ଗଣ୍ଡବ୍ୟୂହ' ଉପହାର ସ୍ୱରୂପ ପଠାଇଥିଲେ । ଏହି 'ଗଣ୍ଡବ୍ୟୂହ' ରାଜା ସ୍ୱହସ୍ତରେ ପ୍ରତିଲିପି କରିଥିଲେ । ଏଥିରୁ ବୁଝାପଡ଼ିବ, ଓଡ଼ିଶାର ରାଜା ସେତେବେଳେ ତାଳପତ୍ରରେ ନିଜେ ଲେଖି ପାରୁଥିଲେ ।

ତାଇସୁ ଚୀନର ପ୍ରସିଦ୍ଧ ତାଂ ବଂଶର ଦ୍ୱିତୀୟ ସମ୍ରାଟ ଥିଲେ । ତାଂ ବଂଶ ରାଜତ୍ୱ କରିଥିଲେ ୬୧୮ ଖ୍ରୀଷ୍ଟାବ୍ଦରୁ ।

ତାଇଙ୍ଗ ଚୀନର ସୀମା ପାରସ୍ୟ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ସେ ରାଜ୍ୟରେ ବିଦ୍ୟାର ବହୁଳ ପ୍ରସାର କରିଥିଲେ ଏବଂ ଏକ ବ୍ୟବହାରତନ୍ତ୍ର ଓ ଦେଶର ଇତିହାସ ଲେଖାଇଥିଲେ । ତାଙ୍କ ଦରବାରରେ ବନ୍ଧୁତା ସୂତ୍ରରେ କନଷ୍ଟାଣ୍ଟିନୋପଲ୍-ବାଇଜେଣ୍ଟାଇନ ଗ୍ରୀକ୍ ରାଜ୍ୟର, ପାରସ୍ୟର, ଭାରତର ଓ ଅନ୍ୟ କେତେକ ରାଜ୍ୟର ଅନେକ ରାଜଦୂତ * ବାସ କରୁଥିଲେ ।

ତାଇଙ୍ଗଙ୍କ ବିଖ୍ୟାତ ଚୀନ ଦରବାର ସଙ୍ଗେ ଚଣ୍ଡୀହର ରାଜାଙ୍କ ମହାଶିବଗୁପ୍ତଙ୍କ ରାଜନୈତିକ ମୈତ୍ରୀ ସମ୍ପର୍କ ଥିଲା । ସେତେବେଳେ ଓଡ଼ିଶା ଓ ଚୀନ ମଧ୍ୟରେ କ୍ଷିପ୍ର ବାଣିଜ୍ୟ କାରବାର ଚାଲୁଥିଲା । ରାଜାଙ୍କ ଦୂତ ରୂପେ ଚୀନ ଦରବାରକୁ ପ୍ରଜ୍ଞା ନାମକ ଏକ ବିଦ୍ୱାନ୍ ବୌଦ୍ଧଯତି ଯାଇଥିଲେ । ପ୍ରଜ୍ଞା କାବୁଲ ଅନ୍ତଃପାତୀ କପିସା (କପିଶ) ର ଅଧିବାସୀ ଥିଲେ ।

ପ୍ରଜ୍ଞା ଉତ୍ତରଭାରତର ବିଖ୍ୟାତ ବିଦ୍ୟାପୀଠମାନଙ୍କରେ ଓ ନାଳନ୍ଦାରେ ଅଧ୍ୟୟନ କରିଥିଲେ । ନାଳନ୍ଦାରେ ସେ ଅଠର ବର୍ଷ

* ଚୀନ ଇତିହାସରେ ଚୀନା ଭାଷାରେ ତତ୍‌କାଳୀନ ଓଡ଼ିଶାରାଜାଙ୍କ ବର୍ଣ୍ଣନା କରା ହୋଇଛି "ପରମ ଧର୍ମବିଶ୍ୱାସୀ ମହାଯାନପନ୍ଥୀ ସୌଭାଗ୍ୟବାନ୍ ଶିବକର କେଶରୀ ରାଜା" ବୋଲି । ଓଡ଼ିଶାର ରାଜା କାବୁଲର ବିଦ୍ୱାନ୍ ଯତି ପ୍ରଜ୍ଞାଙ୍କୁ ଗଣ୍ଡବ୍ୟୂହ ହସ୍ତରେ ଚୀନ ଦରବାରକୁ ପଠାଇଥିଲେ ।

ଏହି 'ଶିବକର କେଶରୀ' ରାଜା ସମ୍ଭବତଃ ଉଦ୍ୟୋତକେଶରୀ ଥିଲେ । ଅନ୍ୟ କୌଣସି କେଶରୀ ରାଜା ମଧ୍ୟ ପ୍ରଜ୍ଞାଙ୍କୁ ଚୀନ ଦରବାରକୁ ଦୂତ ରୂପେ ପଠାଇ ଥାଇପାରନ୍ତି ।

ବିଦ୍ୟା ଆଲୋଚନା କରିଥିଲେ । ତାପରେ ଓଡ଼ିଶାକୁ ଆସି ଏକ ବୌଦ୍ଧବିହାରରେ ଯୋଗଦର୍ଶନ ଆଲୋଚନା କରିଥିଲେ । ଏପ୍ରକାର ବିଦ୍ୱାନଙ୍କୁ ଚୀନ ଦରବାର କିଭଳି ସମ୍ଭ୍ରମରେ ଗ୍ରହଣ କରିଥିବ ଏବଂ ତଦ୍ୱାରା ଓଡ଼ିଶାର କି ପ୍ରକାର ମାନଗୌରବ ବୃଦ୍ଧି ହୋଇଥିବ, ତାହା କେବଳ କଳ୍ପନାର ବିଷୟ ।

ବ୍ରହ୍ମେଶ୍ୱର ଶିଳାଲିପିରେ ଉଦ୍ୟୋତକେଶରୀ ତ୍ରିକଳିଙ୍ଗା-ଧିପତି ରୂପେ ବର୍ଣ୍ଣିତ ହୋଇଛନ୍ତି । ଖଣ୍ଡଗିରିର ଯେଉଁ ଗୁମ୍ଫାରେ



ଭୁବନେଶ୍ୱର ଦେଉଳର ଚିତ୍ର

ସେ ମାତା କୋଲାବତୀଙ୍କ କୀର୍ତ୍ତି ବର୍ଣ୍ଣନା କରିଛନ୍ତି, ସେହି ଗୁମ୍ଫା 'ଲଲାଟେନ୍ଦୁ କେଶରୀ ଗୁମ୍ଫା' ନାମରେ କଥିତ ହୁଏ । ଏଥିରୁ

ଅନୁମାନ କରାଯାଏ ଯେ ଜନଶ୍ରୁତ-ପ୍ରସିଦ୍ଧ ଲିଙ୍ଗରାଜ-ମନ୍ଦିର-ନିର୍ମାତା ଲଲାଟେନ୍ଦୁ କେଶରୀ ସେହି ଉଦ୍ୟୋତକେଶରୀ ଥିଲେ । ଲିଙ୍ଗରାଜ ମନ୍ଦିର ଓ ବ୍ରହ୍ମେଶ୍ୱର ମନ୍ଦିରର ଶିଳ୍ପକଳା ପରସ୍ପର ତୁଳନାରେ ଏକୋଇଶବାଇଶ । ଜଣାଯାଏ, ଉଭୟ ମନ୍ଦିର ସମକାଳୀନ ଶିଳ୍ପୀମାନଙ୍କର କୃତ ।

ପୁରୀ ଜଗନ୍ନାଥ ମନ୍ଦିରର ମାଦଳା ପାଞ୍ଜି ମତେ ଲଲାଟେନ୍ଦୁ 'କେଶରୀବଂଶ'ର ପଞ୍ଚମ ରାଜା । ମାଦଳାରେ ଜନମେଜୟଙ୍କ ନାମ ନାହିଁ । ସୁତରାଂ ମାଦଳାର ବଂଶଲତା ସଙ୍ଗେ ଏହି ପୁସ୍ତକରେ ପ୍ରଦତ୍ତ ବଂଶଲତାର ସାମଞ୍ଜସ୍ୟ ରହିବ, ଯଦି ଉଦ୍ୟୋତକେଶରୀଙ୍କୁ ଲଲାଟେନ୍ଦୁ କେଶରୀଙ୍କଠାରୁ ଅଭିନ୍ନ ବୋଲି ମନେ କରାଯିବ ।

ରାଜତ୍ୱର ଶେଷାଂଶରେ କେଶରୀ ରାଜାମାନେ ଭୁବନେଶ୍ୱରରୁ କଟକକୁ ରାଜଧାନୀ ଉଠାଇ ନେଇଥିଲେ । ସେତେବେଳେ କଟକର ନାମ ଥିଲା 'ବରାଣସୀ କଟକ' । ଆଧୁନିକ ବଡ଼ାନସୀ (ବାରଣସୀ) ଗ୍ରାମ ସେହି ପ୍ରାଚୀନ ରାଜଧାନୀର ଅବସ୍ଥାନର ସୂଚନା ଦିଏ । ମହାନଦୀ ଓ କାଠଯୋଡ଼ୀର ବନ୍ୟାରୁ କଟକକୁ ରକ୍ଷା କରିବା ନିମନ୍ତେ କେଶରୀବଂଶ ଯେଉଁ ପଥରବନ୍ଧ ପକାଇଥିଲେ, ତାହା ମହାରକାଗ୍ର କାଳର ବିକରାଳ ଭ୍ରୂକୁଟିକୁ ଅବଜ୍ଞା ପ୍ରଦର୍ଶନ କରି ଏପର୍ଯ୍ୟନ୍ତ ଦୃଢ଼ ଓ ଅଟଳ ରହିଛି ଏବଂ ବିଂଶ ଶତାବ୍ଦୀର ବିଜ୍ଞାନକୁ ଉପହାସ କରୁଅଛି ।

ସୋମଗୁପ୍ତ ବଂଶର ଶିଳାଲେଖ ଓ ତାମ୍ରଶାସନମାନଙ୍କରୁ ସ୍ପଷ୍ଟ ଜଣାଯାଏ ଯେ ଶାସନପ୍ରଣାଳୀ, ସଂସ୍କୃତ, ଭାଷା ଓ ଲିପିର ଐକ୍ୟ ବା ସାମ୍ୟ ନେଇ କଳିଙ୍ଗ, କୋଶଳ, କଙ୍ଗୋଦ, ଓଡ୍ର, ଉତ୍କଳ,

ରାଢ଼, ଗୌଡ଼ ଓ ବଙ୍ଗ ଗୋଟିଏ ଭୂଖଣ୍ଡ ଥିଲା । ଏହି ସମଗ୍ର ଅଞ୍ଚଳର ଅଧିବାସୀ ଗୋଟିଏ ଗୋଷ୍ଠୀର ଲୋକ ଥିଲେ । ଜନମେଜୟ କଳିଙ୍ଗ ତଥା କୋଶଳର ଅଧିପତି ଥିଲେ । ବଙ୍ଗ, ରାଢ଼ ଓ ଗୌଡ଼ ଜନମେଜୟଙ୍କ ସହୋଦରମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଓଡ଼ିଶା ଓ ବଙ୍ଗଳା ମଧ୍ୟରେ ସଂସ୍କୃତିର ଅଭେଦତ୍ୱ ଥିଲା । ସମଗ୍ର ଅଞ୍ଚଳରେ ଗୋଟିଏ ଭାଷା ଓ ଗୋଟିଏ ଲିପି ଥିଲା । ତହିଁରୁ କ୍ରମେ ବିକାଶ ଲାଭ କରିଥିଲା ଓଡ଼ିଆ ଓ ବଙ୍ଗଳା ଦୁଇ ଭାଷା ଓ ଦୁଇ ଲିପି । ସୋମଗୁପ୍ତମାନେ ଆଧୁନିକ ଓଡ଼ିଆ ଭାଷା ଓ ଲିପିର ମୂଳ ନିର୍ମାତା ଥିଲେ ।

ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରନିର୍ମାତା ଥିଲେ ସୋମଗୁପ୍ତ ବଂଶର ଲଲାଟେନ୍ଦୁ କେଶରୀ । ଏହି ଲଲାଟେନ୍ଦୁ ଉଦ୍ୟୋତକେଶରୀ ବୋଲି ପ୍ରତୀତ ହୁଏ । କୋଶଳର ପ୍ରଥା ଅନୁସାରେ ଲିଙ୍ଗରାଜ ମନ୍ଦିରର ପୂଜକ ରୂପେ ଶୂଦ୍ର ମାଳାକାର (ମାଳୀ) ଜାତିର ଲୋକେ ନିଯୁକ୍ତ ହୁଅନ୍ତି । କୋଶଳର ପ୍ରଚଳିତ ରୀତି ଅନୁସାରେ ଲିଙ୍ଗରାଜ ମନ୍ଦିରରେ ଦେବଦାସୀ ନର୍ତ୍ତକୀ ରହନ୍ତି ନାହିଁ ।

ଖାରବେଳ ଚେତିଙ୍କ ପୂର୍ବଜମାନେ କୋଶଳବାଟେ ପହଞ୍ଚି-ଥିଲେ କଳିଙ୍ଗରେ । ସୋମଗୁପ୍ତମାନେ ମଧ୍ୟ ଆସିଥିଲେ ସେହି ବାଟେ । ଉତ୍ତରଭାରତର ସଂସ୍କୃତି ଓ ସଭ୍ୟତା ଓଡ଼ିଶାରେ ସେହି ବାଟେ ପଶିଛି । ଲିଙ୍ଗରାଜ ମନ୍ଦିରର ଶିଳ୍ପକଳା କୋଶଳ ଶିଳ୍ପକଳାର ବିକଶିତ ପରିଣତି । ଉତ୍ତରଭାରତର ଶିଳ୍ପକଳା ଓଡ଼ିଆ ଶିଳ୍ପୀ ହାତରେ ଭୁବନେଶ୍ୱରରେ ଭଲ ବଢ଼ିଛି ଦେଖାଯାଉଛି, ଯେପରି ପାରସିକ ଶିଳ୍ପ ଉତ୍ତରଭାରତରେ ଭାରତୀୟ ଶିଳ୍ପୀ—ହାତରେ ଦେଖାଯାଉଛି ପରିବର୍ତ୍ତିତ

ଗ୍ରହ । ମୂଳରେ ସୋମଗୁପ୍ତ ରାଜବଂଶ ଓଡ଼ିଶାର ଧର୍ମ, ସଭ୍ୟତା, ସଂସ୍କୃତି, ସାହିତ୍ୟ, ଭାଷା, ଲିପି, ଶିକ୍ଷା ଓ ଶିଳ୍ପସ୍ଥାପତ୍ୟ କଳାକୁ ମୂଳଭିତ୍ତି ଦେଇ ଯାଇଛନ୍ତି ।

କଳିଙ୍ଗ ବା ଉତ୍କଳ ଅଞ୍ଚଳର ବ୍ରାହ୍ମଣମାନେ ଭୂମିବୃତ୍ତି ଓ ରାଜକୀୟ ଅନୁଗ୍ରହ ପାଇ ଆସି କୋଶଳରେ ବାସକଲେ । ରାଜବଂଶ ସଙ୍ଗେ ବହୁଲୋକ କୋଶଳରୁ ଯାଇ ଉତ୍କଳ ଅଞ୍ଚଳରେ ବାସ କରିଥିଲେ । ପରସ୍ପର ସଂସ୍କୃତି ସମନ୍ୱୟରେ ଗଠିତ ହେଲା ନୂତନ ଓଡ଼ିଶା, ଯହିଁରେ ପୁରପୂର୍ଣ ଭାଗ ନେଲା କୋଶଳ । ଉତ୍କଳ ଅଞ୍ଚଳ ଓ କୋଶଳର ମିଶ୍ରିତ ସଭ୍ୟତାର ନାମ ହେଲା ଓଡ଼ିଆ ସଭ୍ୟତା ଯହିଁର ନିର୍ମାତା ସୋମଗୁପ୍ତ ରାଜବଂଶ ।

ସୋମଗୁପ୍ତ ବଂଶର ତଥା ସମସାମୟିକ ଭାରତର ରାଜବଂଶ-ମାନଙ୍କର ତାମ୍ରଶାସନ ଓ ଶିଳାଲେଖମାନଙ୍କରୁ ତଥା ସାହିତ୍ୟରୁ ଭାରତର ସୁଗଠିତ ଓ ସୁପରିଚାଳିତ ପ୍ରାଚୀନ ରାଜନୈତିକ ସଂସ୍ଥାର କଥା ଜଣାଯାଏ । ବହୁ ପ୍ରାଚୀନ କାଳରୁ ଦେଶରେ ପ୍ରଚଳିତ ସଂସ୍ଥା ଅଳ୍ପ ବେଶୀ ପରିବର୍ତ୍ତିତ ଆକାରରେ କ୍ରମେ ବିକଶିତ ହୋଇ ଭାରତରେ ଚାଲି ଆସୁଛି । ଆଶ୍ଚର୍ଯ୍ୟର କଥା ଯେ, ମୁସଲମାନ ଓ ଇଂରାଜ ଶାସନରେ ମଧ୍ୟ ସେହି ମୂଳପିଣ୍ଡରେ ବିଶେଷ କିଛି ପରିବର୍ତ୍ତନ ଘଟିନାହିଁ । ହଜାର ହଜାର ବର୍ଷ ପରେ ସୁଦ୍ଧା ଭାରତର ଶାସନ-ସଂସ୍ଥା ମୂଳ ରୂପକୁ ଅବିକଳ, ଅବ୍ୟାହତ ଅବସ୍ଥାରେ ରଖିପାରିଛି ।

ସମଗ୍ର ରାଷ୍ଟ୍ରର ପ୍ରଧାନ ବା ରାଜାଙ୍କ ତଳେ କେତେକ ମହାସାମନ୍ତ ଏବଂ ମହାସାମନ୍ତଙ୍କ ତଳେ ସାମନ୍ତମାନେ ଥିଲେ । ରାଷ୍ଟ୍ର କେତେକ ମଣ୍ଡଳରେ ବିଭକ୍ତ ଥିଲା । ମଣ୍ଡଳମାନ ରାଜାଙ୍କ

ପ୍ରତ୍ୟକ୍ଷ ଶାସନରେ କିଂବା ମହାସାମନ୍ତମାନଙ୍କ ଶାସନରେ ରହୁଥିଲା। ପ୍ରତ୍ୟକ୍ଷ ଶାସିତ ମଣ୍ଡଳମାନଙ୍କରେ ଆବଶ୍ୟକ ମତେ କୁମାରମାତ୍ୟ ବା କୁମାରଧିରଜମାନେ ( ରାଜବଂଶୀୟ ଶାସନକର୍ତ୍ତା ) ନିଯୁକ୍ତ ହେଉଥିଲେ । କୁମାରମାତ୍ୟ କିଂବା ରାଜା ରାଜନୈତିକ ସମ୍ପର୍କ ରଖୁଥିଲେ ଆଞ୍ଚଳିକ ମଣ୍ଡଳସାମନ୍ତମାନଙ୍କ ସଙ୍ଗେ * । କେନ୍ଦ୍ର-ଶାସନରେ ରାଜାଙ୍କର ଏକ ମନ୍ତ୍ରୀମଣ୍ଡଳ (ସାଧାରଣରେ ଆଠ ଜଣ ମନ୍ତ୍ରୀ) ରହୁଥିଲେ । ସେମାନଙ୍କୁ କହା ଯାଉଥିଲା :—

(୧) ମନ୍ତ୍ରୀସାଧାରଣ (ପ୍ରଧାନ ମନ୍ତ୍ରୀ), (୨) ମହାସାନ୍ଧିବିଗ୍ରହୀ (ରଣସଚିବ), (୩) ମହାକ୍ଷପଟଳିକ (ଲେଖମନ୍ତ୍ରୀ), (୪) ମହା-ବଳାଧିକାରୀ (ସେନାପତି), (୫) ମହାଦଣ୍ଡନାୟକ (ବିଚାରାଧୀଶ) ଇତ୍ୟାଦି ‡ । ପ୍ରଥମ ଦୁଇ ଜଣ ଅର୍ଥାତ୍ ପ୍ରଧାନ ମନ୍ତ୍ରୀ ଓ ରଣସଚିବ ରାଜ୍ୟର ପ୍ରକୃତ ନିୟନ୍ତା ମନ୍ତ୍ରୀ ଥିଲେ । କୋଷାଧ୍ୟକ୍ଷ ଆଦି ଅନ୍ୟାନ୍ୟ ମନ୍ତ୍ରୀ ମଧ୍ୟ ଥିଲେ ।

ମଣ୍ଡଳମାନ କେତେକ ଭୁକ୍ତିରେ, ଭୁକ୍ତିମାନ ବିଷୟରେ, ଏବଂ ବିଷୟମାନ କେତେକ ପାଟକ ବା ପଟିରେ ବିଭକ୍ତ ହେଉଥିଲା । ପାଟକ ବା ପଟିମାନ କେତେକ ଗ୍ରାମର ସମଷ୍ଟି ଥିଲା § । ପଟିକୁ

* Kalsi Rock Edict XIII—Inscriptions of Asoka Part 2—Benimadhav Barua, Jaugada Rock Edict 1.

‡ ପ୍ରଥମ ମହାଭବଗୁପ୍ତଙ୍କର ରଣ୍ଡା ଓ ଅଙ୍ଗଣ୍ଡିଳ ତାମ୍ରଶାସନ ।

§ ସୋମଗୁପ୍ତ ବଂଶର ସମସ୍ତ ତାମ୍ରଶାସନ ଓ ମଧ୍ୟମରାଜ ଶୈଳୋଦ୍ଭବଙ୍କ ପାରିକୁଦ ତାମ୍ରଶାସନ ।

ଆଧୁନିକ ରେଭେନ୍ୟୁ ଇନସ୍ପେକ୍ଟରଙ୍କ ଠିକ ସଙ୍ଗେ ତୁଳନା କରି ଯାଇପାରେ । ବିଷୟ (ବା ଜିଲ୍ଲା)ର ଶାସନ ପାଇଁ ଥିଲେ ବିଷୟପତି, ବିଷୟୀ ବା ବିଷୋଇ ଏବଂ ଗ୍ରାମର ଶାସକଙ୍କୁ କହାଯାଉଥିଲା ଅଯୁକ୍ତକ ବା ପ୍ରାଦେଶିକ ଗ୍ରାମାଧିପତିଙ୍କୁ କହାଯାଉଥିଲା ବୃହଦ୍-ଭୋଗୀ । ପ୍ରତି ଗ୍ରାମରେ ଜଣେ ଦାଣ୍ଡପାଶିକ (ଦଣ୍ଡୁଆଣୀ) ଗ୍ରାମର ଶାନ୍ତିରକ୍ଷା ନିମନ୍ତେ ନିଯୁକ୍ତ ହେଉଥିଲେ ।

ମନ୍ତ୍ରୀମାନେ ସମଗ୍ର ଶାସନ କାର୍ଯ୍ୟ ନିର୍ବାହ କରୁଥିଲେ ଏବଂ ସେମାନେ ପ୍ରାୟ ସମସ୍ତେ ବ୍ରାହ୍ମଣ ଶ୍ରେଣୀରୁ ଗୃହୀତ ହେଉଥିଲେ । ଅନ୍ୟ ମନ୍ତ୍ରୀମାନଙ୍କର କାର୍ଯ୍ୟର ସାଧାରଣ ତତ୍ତ୍ୱାବଧାନ କରୁଥିଲେ ମନ୍ତ୍ରୀସାଧାରଣ ବା ପ୍ରଧାନ ମନ୍ତ୍ରୀ । ରାଜା ସମସ୍ତଙ୍କର ନିୟୋକ୍ତା ଓ ଯନ୍ତା ଥିଲେ ଏବଂ ଯୁଦ୍ଧବେଳେ ଯୁଦ୍ଧକ୍ଷେତ୍ରରେ ପ୍ରଧାନ ସେନାପତି କାର୍ଯ୍ୟ କରୁଥିଲେ ¶ ।

ସମଗ୍ର ଓଡ଼ିଶା ଅନେକଗୁଡ଼ିଏ ବର୍ତ୍ତିନୀ ବା ମଣ୍ଡଳରେ ବିଭକ୍ତ ହୋଇଥିଲା † । ଖ୍ରୀ° ପୂ° କହନ୍ତି ଯେ କଙ୍ଗୋଦ ତୋଷାଳିର ଏକ ମଣ୍ଡଳ ଥିଲା । ନିମ୍ନରେ ବଡ଼ିଲ ଭିତିରୁ ... ଓଡ଼ିଶାର କେତେକ ମଣ୍ଡଳର ନାମ ଉଲ୍ଲେଖ କରା ଯାଉଅଛି :—

¶ ପ୍ରଥମ ମହାଭବଗୁପ୍ତଙ୍କ ଭୁଲେଣ୍ଡା ତାମ୍ରଶାସନ । ମହାଶିବଗୁପ୍ତ ଯଯାତିଙ୍କ ଚନ୍ଦ୍ରଗ୍ରାମ ତାମ୍ରଶାସନ ।

† ଇନ୍ଦ୍ରବର୍ମାଙ୍କ ୧୮୭ ଗଙ୍ଗାବ୍ଦର ତାମ୍ରଶାସନ–Vide Upalavada Copperplate Grant of Ranaka Ramadeva —Jounal of Orissa Academy, Vol. 2. No. 1, PP. 69—76,

୧—ମୟୂରଭଞ୍ଜ ଓ କେନ୍ଦୁଝର—ଖିଜିଙ୍ଗ ମଣ୍ଡଳ ।
୨—ବଉଦ୍‌ଧବଂଶୀୟ ରାଜାମାନଙ୍କର—ବଣାଇ ମଣ୍ଡଳ ।
୩—ରେଢ଼ାଖୋଲ ଓ ଅନୁଗୁଳ—ଯମଗର୍ତ୍ତ ମଣ୍ଡଳ ।
୪—ଢେଙ୍କାନାଳ ଓ ତାଳଚେର—କୋଦାଳକ ମଣ୍ଡଳ ।
୫—ନରସିଂହପୁର, ବଡ଼ମ୍ବା ପ୍ରଭୃତି—ଐରାବତ ମଣ୍ଡଳ ।
୬—ନୟାଗଡ଼ ଓ ଦଶପଲ୍ଲା—ଗୃମ୍ଣ୍ଡାମଣ୍ଡଳ ।
୭—କାସାଇ ଓ ସୁବର୍ଣ୍ଣରେଖା ମଧ୍ୟବର୍ତ୍ତୀ ଅଞ୍ଚଳ—ଦଣ୍ଡଭୁକ୍ତି-ମଣ୍ଡଳ ।

ରାଷ୍ଟ୍ର ବିଭାଗ :—

୧ । ଗ୍ରାମ ସମୂହର ସମଷ୍ଟି = ପାଟକ, ପଟି ବା ଖଣ୍ଡ ।
୨ । ପଟିକେତେକର ସମଷ୍ଟି = ବିଷୟ ।
୩ । ବିଷୟକେତେକର ସମଷ୍ଟି = ଭୁକ୍ତି ।
୪ । ଭୁକ୍ତିକେତେକର ସମଷ୍ଟି = ମଣ୍ଡଳ ବା ବର୍ତ୍ତିନୀ ।
୫ । ମଣ୍ଡଳମାନଙ୍କର ସମଷ୍ଟି = ରାଷ୍ଟ୍ର ।

ରାଷ୍ଟ୍ର—ମଣ୍ଡଳ ବା ବର୍ତ୍ତିନୀ—ଭୁକ୍ତି—ବିଷୟ—ପାଟକ ବା ପଟି ବା ଖଣ୍ଡ—ଗ୍ରାମ ।

